# ବିଶ୍ୱ ବିପ୍ଳବିଣୀ



ଉଡ଼ିଶା ପବ୍ଲିଶିଙ୍ଗ୍ ହାଉସ୍

# ବିଶ୍ୱ ବିପ୍ଳବିଣୀ

ଶ୍ରୀମତୀ ସରଳା ଦେବୀ

ନୂତନ ମୁଦ୍ରଣ—୧୯୫୮

ପ୍ରକାଶକ

ଓଡ଼ିଶା ପବ୍ଲିଶିଙ୍ଗ୍ ହାଉସ୍

ବ୍ରହ୍ମପୁର, କଟକ, ସମ୍ବଲପୁର, ଜୟପୁର

ମୂଲ୍ୟ ଏକଟଙ୍କା ବାରଅଣା ମାତ୍ର

# ସୂଚୀ





# ଉତ୍କଳ ଭାରତୀ କୁନ୍ତଳାକୁମାରୀ

ଆମ ଉତ୍କଳଖଣ୍ଡରେ କୁନ୍ତଳାକୁମାରୀ ତାଙ୍କର ଅଦ୍ଭୁତ ପ୍ରତିଭା ସାହିତ୍ୟ ମାଧ୍ୟମରେ ପ୍ରକାଶ କରିଥିଲେ । ଅକାଳରେ ତାଙ୍କର ବିୟୋଗ ଘଟି ନ ଥିଲେ ସେ ଉତ୍କଳ-ଚିତ୍ତକୁ ତାଙ୍କର ପରିଣତ ଜୀବନର ଭାବ ସମ୍ପଦ ଦେଇ ଆହୁରି ଐଶ୍ୱର୍ଯ୍ୟମୟ, ରସାଳ, ସୌନ୍ଦର୍ଯ୍ୟମୟ ଓ ଜାତୀୟ ଭାବଧାରାରେ ଅନୁପ୍ରାଣିତ କରି ପାରି ଥାନ୍ତେ । ତାଙ୍କର ଅନ୍ତରରେ ଯେଉଁ ସ୍ୱଦେଶ ବତ୍ସଳତା ଥିଲା ଓ ତାଙ୍କର ପ୍ରବନ୍ଧ, କବିତା ରଚନାବଳୀରେ ନିଜ ଜାତି ଓ ଦେଶକୁ ଦେଶ ବାହାରେ ଅନ୍ୟଜାତି ଲୋକଙ୍କ ପାଖରେ ବଡ଼କରି ଦେଖାଇବା ପାଇଁ ତାଙ୍କର ଗଭୀର ଆକୁଳ ଆକାଂକ୍ଷା ଥିଲା । ଏହି ଜାତୀୟ ପ୍ରୀତି ତାଙ୍କୁ ଆମ ଦେଶରେ ଚିରସ୍ମରଣୀୟା କରିଛି । ସେ ଖ୍ରୀଷ୍ଟାନ କୁଳରେ ଜନ୍ମି ଓ ଇଂରେଜ ସଂସ୍କୃତିରେ ବଢ଼ି ଡାକ୍ତର ବ୍ୟବସାୟ କରୁଥିଲେ । ପିଲାଦିନେ ବ୍ରହ୍ମଦେଶରେ ତାଙ୍କ ବାପା ମାଆଙ୍କ ପାଖରେ ରହି ଶିକ୍ଷା ପାଇଥିଲେ । ଅଳ୍ପ ବୟସରେ ଡାକ୍ତରୀ ପାଶ୍‌କରି କଟକର ଡାକ୍ତରୀ ସ୍କୁଲ ଅଧ୍ୟକ୍ଷଙ୍କଠାରୁ ସୁନା ମେଡ଼େଲ ପାଇଥିଲେ । ସେ ଯୁଗରେ ତେର ବର୍ଷରେ ସେ ମେଟ୍ରିକ ପାସ କରିଥିଲେ । ଡାକ୍ତର ହୋଇ ବିଲମ୍ବରେ ହିନ୍ଦୀ ଓ ଓଡ଼ିଆ ସାହିତ୍ୟ ସେବା କରି ସେ ବିବାହିତ ଜୀବନ ଅତିବାହିତ କରିଥିଲେ । ସେ ସତ୍ୟାଗ୍ରହ ଆନ୍ଦୋଳନରେ ତିନି ମାସ ଜେଲ୍ ଯାଇଥିଲେ ଓ

ତାଙ୍କର ଶେଷଜୀବନ ଆଡ଼କୁ ଖଦଡ଼ ପିନ୍ଧୁଥିଲେ । ଇଂରେଜୀ, ବଙ୍ଗଳା, ହିନ୍ଦୀ, ଓଡ଼ିଆ—ସବୁ ଭାଷାରେ ତାଙ୍କର ଜ୍ଞାନ ପ୍ରଖର ଥିଲା । ସେ ସାମାଜିକ, ରାଜନୈତିକ ସବୁ ସଭାରେ ଓଡ଼ିଆଙ୍କର ନେତୃତ୍ୱ କରୁଥିଲେ । ଛିନ୍ନମସ୍ତା ଓଡ଼ିଶାକୁ ପୂର୍ଣ୍ଣାଙ୍ଗ ଦେଖିବା ତାଙ୍କର ଅଭିଳାଷ ଥିଲା । ସେ ତିନୋଟି ସନ୍ତାନର ଜନନୀ ଥିଲେ । ସଭାରେ ତାଙ୍କର ଭାଷଣ ବଡ଼ ତେଜୋଗର୍ଭକ ଥିଲା ଏବଂ ତାଙ୍କର ଗଦ୍ୟ ଓ ପଦ୍ୟରେ ସେ ଦେଶଚିତ୍ତରେ ବିପ୍ଳବର ମଞ୍ଜି ବୁଣୁଥିଲେ । ତାଙ୍କର କବିତା ବହୁଭାବରେ ଉଚ୍ଚ୍ୱସିତ ହୋଇଛି ।

ଏଠାରେ ତାଙ୍କର ବିପ୍ଳବ କବିତାର କଥା କହିବା । "ସ୍ଫୁଲିଙ୍ଗ" ତାଙ୍କର ଯେଉଁ ପ୍ରେରଣା ବହ୍ନି ଉତ୍କଳର ତରୁଣ ତରୁଣୀମାନଙ୍କୁ ଦେଶର ସ୍ୱାଧୀନତା ପାଇଁ ମହାତ୍ମା ଗାନ୍ଧୀ ଆରମ୍ଭ କରିଥିବା ସତ୍ୟାଗ୍ରହ ଆନ୍ଦୋଳନର ସମରାନଳରେ ଯେପରି ସିଂହ ବିକ୍ରମ ଆଣି ଦେଇଥିଲା, ତାହା ଓଡ଼ିଆଜାତି ଭୁଲିବ ନାହିଁ । ଏହି ପୁସ୍ତକଟି ଇଂରେଜ ସରକାରଙ୍କ ବିରୁଦ୍ଧରେ ଜାତିର ଜୀବନରେ ଗୀରଭୀର ଭାବଧାରା ସୃଷ୍ଟି କରୁଥିବାରୁ ତାହା ସରକାର ବନ୍ଦକରି ବାଜେୟାପ୍ତ କରିଦେଇଥିଲେ । ସେ ସତ୍ୟାଗ୍ରହ ସମରରେ ପ୍ରତ୍ୟକ୍ଷ ସହଯୋଗ ରଖି ନ ଥିଲେ ସୁଦ୍ଧା ଯୁଦ୍ଧକାଳରେ ଦେଶରେ ଜାତିର ଗୃହିଣୀରୂପେ ସେ ସୈନିକମାନଙ୍କୁ ଉଦ୍ଦୀପନା ଦେଇଥିଲେ—ତାଙ୍କ କବିତାରେ । ଦିଲ୍ଲୀରେ ଉତ୍କଳ, ଉତ୍କଳ ନାରୀର ପ୍ରତିଷ୍ଠା ସେ ପ୍ରଥମେ ବଢ଼ାଇଥିଲେ । ପ୍ରତି ଜନହିତକର କର୍ମରେ ନିର୍ଭିକ ଭାବରେ ଆତ୍ମନିୟୋଗ କରିବା ତାଙ୍କ ଜୀବନରେ ବିଶେଷତ୍ୱ ଥିଲା । ସେ ନିଜର ଧର୍ମରେ ମଧ୍ୟ ବିପ୍ଳବ କରି ଆର୍ଯ୍ୟ ଧର୍ମ ଗ୍ରହଣ କରି ହିନ୍ଦୁ ମତରେ ବିବାହ କରିଥିଲେ । ସେ ହିନ୍ଦୀର ମାସିକ ପତ୍ରିକାଟିଏ ମଧ୍ୟ ସମ୍ପାଦନା କରୁଥିଲେ । ଉତ୍କଳର ପୁରପଲ୍ଲୀରେ ତାଙ୍କର ବିପ୍ଳବ ଲେଖା ସେ ଯୁଗରେ ବଡ଼

ଆଦୃତ ହେଉ ଥିଲା । ଉତ୍କଳର ଶିଳ୍ପୀ, କାରିଗର ଓ କଳାକାରଙ୍କ କାରିଗରୀ ଉତ୍କଳ ସୀମା ଭିତରେ ରହିଯାଉ ଥିବାରୁ ଓ ବାହାରେ ଆଉ ଓଡ଼ିଆଙ୍କର କୃତିତ୍ୱ କେହି ଜାଣିପାରୁ ନ ଥିବାରୁ ସେ ବଡ଼ କ୍ଷୁବ୍ଧ ହେଉଥିଲେ । ଉତ୍କଳ ସମ୍ମିଳନୀ, ଉତ୍କଳନାରୀ ସମ୍ମିଳନୀର ସଭାପତି ରୂପେ ତାଙ୍କର କାର୍ଯ୍ୟ ଓ ଭାବ ଓଡ଼ିଶାରେ ଖୁବ୍ ଗୌରବାନ୍ୱିତ ହୋଇଥିଲା । କି ତେଜ, କି ଶକ୍ତି, କି ଭବିଷ୍ୟତ ଜାତି ପାଇଁ ପରିକଳ୍ପନା ତାଙ୍କୁ ଅହରହ କର୍ମିଣୀ ବହୁବର୍ଣ୍ଣୀ କରି ରଖିଥିଲା, ତାହା ଆମର ଏପର୍ଯ୍ୟନ୍ତ ମନେ ଅଛି । ସ୍ରୋତସ୍ୱିନୀ ପରି ଥିଲା ତାଙ୍କର ଲିପିକା । ଏ ଯୁଗର ବାଣୀ ଯୁବତୀ କୁନ୍ତଳାଙ୍କ କାନରେ ବାଜଥିଲା ଓ ସେହି ବାଣୀ ସେ ଦେଶବାସୀଙ୍କୁ ଶୁଣାଇ ଉତ୍ତିଷ୍ଠିତ, ଉଦ୍‌ବୋଧିତ, ଜାଗ୍ରତ କରିବାରେ ପ୍ରୟାସିନୀ ହୋଇଥିଲେ । ମନ, ପ୍ରାଣ, ବିବେକ, ସଂସ୍କୃତି, ଭାବ, ଚିନ୍ତା ସବୁ ଦିଗରେ ସେ ଖାଣ୍ଟି ଓଡ଼ିଆଣୀ ଥିଲେ ।

ତାଙ୍କର ଦେଶାତ୍ମବୋଧଜନକ କବିତାମାନଙ୍କରେ "ଆହ୍ୱାନ" ଓ "ସ୍ଫୁଲିଙ୍ଗ"ର କବିତା ଶ୍ରେଷ୍ଠ ବୋଲି ମନେ ହୁଏ । ଆମ ଜାତୀୟ ଜୀବନରେ ଅଯୋଗ୍ୟତା ହେତୁ ତାଙ୍କର ରଚନା ଗୁଡ଼ିକର ଆଉ ପୁନର୍ମୁଦ୍ରଣ ଦେଖାଯାଏ ନାହିଁ । "ସ୍ଫୁଲିଙ୍ଗ" ଓ 'ଆହ୍ୱାନ' ଭଳି ପୁସ୍ତକ ଓଡ଼ିଶାରେ କେବଳ ନୁହେଁ, ଭାରତରେ ମଧ୍ୟ ବିରଳ । ଉତ୍କଳର ସ୍ୱାଧୀନତା ଆନ୍ଦୋଳନ ଯୁଗର ତାହା ଏକ ସମର-ସାହିତ୍ୟ ।

ମହାଭାରତୀୟ ବିଂବଧାରା ସଙ୍ଗେ ଆମର ଦୀନାହୀନା ଉତ୍କଳ ପାଇଁ ତାଙ୍କର ବେଦନାର ଭାବ, ଭକ୍ତି ଭାବ ସେ ଦେଶ ଚିତ୍ରରେ ଦେଇଥିଲେ । ଉତ୍କଳର ଦୁଃଖଦୁର୍ଦ୍ଦଶା ଦେଖି ସେ ଲେଖିଥିଲେ:—

ପଡ଼ିଅଛି ଭାଙ୍ଗି ଦୁର୍ଗ ବାରବାଟୀ,
କୋଣାର୍କ ଶିଖର ଚୁମ୍ବିଅଛି ମାଟି

ମାଳଚନ୍ଥ ବାନା ଲୋଟୁଛି ଧୂଳିରେ,
ପୋତି ପଡ଼ିଅଛୁ ଚିଲିକା ବାଲିରେ ।
ଆଜି ନ ନାଚଇ ଓଡ଼ିଆ ବୋଇତ,
ମାରଧି ତରଙ୍ଗେ ରଙ୍ଗେ ଆଲିଙ୍ଗିତ ।
ମାରବ ଉତ୍କଳ ଶାରଳା ସଙ୍ଗୀତ,
ହଜିଅଛୁ ଚିର ଏ ଜାତି ବିଭବ ।
ଉପାଡ଼ିଲେ ଲୀନ ଓଡ଼ିଆ ଗରବ,
ଛିନ୍ନଭିନ୍ନ ଅଙ୍ଗେ ମରଣ ଜ୍ୱରଙ୍ଗେ
ନବ ଜାଗରଣ ଆଜି କି ସମ୍ଭବ ?

କ୍ଷୁଦ୍ର ପ୍ରଦେଶ ସୀମା, ବ୍ୟାହତ ଓଡ଼ିଆ ଭାଷା ଓ ସଂସ୍କୃତି ତାଙ୍କର ତରୁଣ ପ୍ରାଣକୁ ସର୍ବଦା କଷାଘାତ କରୁଥିଲା । ଜାତିର ଲୁପ୍ତ ଗୌରବ ଉଦ୍ଧାର ଆଶା ସେ ମନରେ ପୋଷିଥିଲେ । ପରପଦଦଳିତ ନିରନ୍ନ ଓଡ଼ିଆ ଗର୍ବରେ ମସ୍ତକ ଉତ୍ତୋଳନ କରି ପୃଥିବୀର ଅନ୍ୟ ଜାତିମାନଙ୍କ ସହିତ ସମାନ ଆସନରେ ଦିନେ ବସି ପାରିବ—ଏହାର ସ୍ୱପ୍ନ ସେ ଦେଖୁଥିଲେ । ସେଥିପାଇଁ ସେ ଗାଇଛନ୍ତି:—

ମାଗ୍‌ସାର ଗୀର ନ ଘୋଷୁ ରସନା—
ନ ବାଜୁ ତାହା ଏ ଜାତି ଶ୍ରବଣେ,
ଦେଢ଼ କୋଟି ପ୍ରାଣ ନବ ଜାଗରଣେ,
ହିଅ ଉଠିବାକୁ ନବ ବିକ୍ରମରେ ।
କହଁ ଧୂଳି ତଳେ ରଚ ମୃତ ଶେଯ,
ଦିଶାଇବେ ସର୍ବେ ନର ବୀର୍ଯ୍ୟ ତେଜ,
ଅନନ୍ତ ମରଣ ଏ ଜାତି କପାଳେ,

ଲେଖି ନାହିଁ ବିଧି ଧାରୀ ।
ଉଠିବେ ଉଠିବେ ଦେଢ଼ କୋଟି ଆତ୍ମା,
ଅମୃତ ପଥ ଯାତ୍ରୀ ।

ଓଡ଼ିଆ ତରୁଣ ପ୍ରାଣରେ ଦିନେ ଉନ୍ମାଦନା ଆସିବ ବୋଲି ତାଙ୍କର ବିଶ୍ୱାସ ଥିଲା । ସାହସର ଅଭାବ, ଦାରିଦ୍ର୍ୟ, ଅଜ୍ଞାନ ଅନ୍ଧକାରରେ ପଡ଼ି ଓଡ଼ିଆ ଯୁବକ ତା'ର କର୍ତ୍ତବ୍ୟପଥରୁ ବିଚଳିତ ହେବ ନାହିଁ ବୋଲି ତାଙ୍କର ଆସ୍ଥା ଥିବାରୁ ସେ ଲେଖିଛନ୍ତି:—

**କିଏ କହେ ନାହିଁ ଆମର ସାହସ ?**
**କିଏ କହେ ଆମେ ଅଜ୍ଞାନ ଅଳସ ?**
**କିଏ କହେ ମୃତ ଓଡ଼ିଆର ପ୍ରାଣ,**
ଚିର ଅବସାନ ତାହା ଗୌରବ ଠାଣ ।

ପରପଦାନତ ଦୁର୍ବଳ ଖିନ୍ନ ନିତ୍ୟ ଲାଜେ ମିୟମାଣ ?

ଜାଗ୍ରତ ତରୁଣର ତାରୁଣ୍ୟକୁ ଲକ୍ଷ୍ୟ କରି ବିପ୍ଳବୀ କବି ଲେଖିଥିଲେ —

"ଉଦ୍ଧରିବ ସେହି ଏ ଦୀନ ଉତ୍କଳ;
ଭଞ୍ଜଭୂମି ଦିନେ ହେବ ନନ୍ଦନସ୍ଥଳ ।
ଅନଙ୍ଗ ଯଯାତି ଆସିବେ ତ ଫେରି,
ବାଜିବ ଓଡ଼ିଆ ଜୟଭୁରୀ ଭେରୀ ।
ଜାଗିଅଛନ୍ତି ଆଜ ତରୁଣ କେଶରୀ,
ନୀଳାଚଳ ପୃଷ୍ଠ ଚୂଳେ ।
ବନ୍ଦନା ଗୀତି ଗାଇଅଛନ୍ତି ଉଲ୍ଲସି
ତରଙ୍ଗ ସାଗର କୂଳେ ।"—ଇତ୍ୟାଦି

କୁନ୍ତଳା ୧୯୩୦ ସାଲର ସ୍ୱାଧୀନତା ସଂଗ୍ରାମରେ ତାଙ୍କର ଦେଶ ଜାତିପ୍ରୀତି କବିତାରେ ଅସଂଖ୍ୟ ଯୁବକଙ୍କୁ ଉନ୍ମାଦନା

ଦେଇଥିଲେ । ସ୍ୱାଧୀନତା ଆନ୍ଦୋଳନ ପୂର୍ବରୁ ମଧ୍ୟ ସେ ବିପ୍ଳବ କବିତା ଲେଖିଥିଲେ ।

ଆମେ ଆମ ଆଭ୍ୟନ୍ତରୀଣ ଦୁର୍ବଳତା ବଶତଃ ନିଜ ଦେଶ ଓ ଜାତିର ସ୍ୱାଧୀନତା ହରାଇ ବସିଛୁ । ଭାଇ ଭାଇ ଭିତରେ ଅଯଥା କଳହ ବିଦ୍ରୋହ ସୃଷ୍ଟି କରି ବିଦେଶୀଙ୍କୁ ଡାକି ନିଜ ଗୃହରେ ପ୍ରଭୁତ୍ୱ ଦେଉଛୁଁ—ଅଧିକାର ଦେଉଛୁଁ । ଆମେ ଯାହା ଅର୍ଜ୍ଜନ କରୁଛୁଁ, ହାଡଭଙ୍ଗା ଶ୍ରମକରି; ମୁଣ୍ଡଝାଳ ତୁଣ୍ଡରେ ମାରି ଯାହା ସଞ୍ଚୟ କରୁଛୁଁ, ତାହା ବିଦେଶୀଙ୍କ ବିଳାସ ବ୍ୟସନରେ ଅଜାଡରେ ବ୍ୟୟ ହେଉଛି । କବି କୁନ୍ତଳା ବଡ ବ୍ୟଥିତା ହୋଇ ସେହିପାଇଁ ଲେଖିଥିଲେ—

କୁଳାଙ୍ଗାର ସୁତେ          କି ସୁଖେ ଜନନୀ
ଧରିଛୁ ଦୁର୍ବଳ କୋଳେ
ମୁରୁଛି ନ ପାରୁ          ଆମକୁ ସେତିକ
ମାତୃ ସ୍ନେହ ମାୟା ହେଲେ ?
ତେଣୁ କି ତୋହର          କେଦାରେ କେଦାରେ
ସଜାଇ ରଖିଛୁ, ସ୍ୱର୍ଣ୍ଣ ଶସ୍ୟ ଭରେ,
ଅଯୋଗ୍ୟ ଆମେ ଲୋ !          ଆମ ଅରଜନ
ପର ପାଦତଳେ ଲୋଟୁଛି,
ଆପଣା ବେଳକୁ          ହାଣ କୁରାଢ଼ିରେ
ଭାଇ ଭାଇ ଗଳା କାଟୁଛି ।
ତେଲେ ପ୍ରେମ ଆଉ ନାହିଁ ଆମ ଘରେ
ଖସୁଛୁଁ ଆପଣା ସୋଦର ରକ୍ତରେ,
ହିନ୍ଦୁ ମୁସଲମାନ ଦୁଇ ବାହୁ ତୋର
ଦୁହିଙ୍କ ଭିତରେ ଦ୍ୱନ୍ଦ ଯୁଦ୍ଧ ଘୋର ।

ବୀର ବିଦେଶୀଙ୍କୁ ବରଣ କରିଣ
ଜଗତରେ ଲୋକ ହସା,
ଆମର କରମ ଆମକୁ ଘାରୁଛି
କେ ଫେଡ଼ିବ ଆମ ଦଶା ?

ଯେତେଦିନ ପର୍ଯ୍ୟନ୍ତ ଭାରତବାସୀ ଭେଦ ଭାବ ଭୁଲି ଏକତା-ପାଶରେ ଆବଦ୍ଧ ନ ହୁଅନ୍ତି, ସେତେଦିନ ପର୍ଯ୍ୟନ୍ତ ଆମର ଜାତିର ଉନ୍ନତି ହେବ ନାହିଁ, କି ଭାରତର ମୁକ୍ତି ହେବ ନାହିଁ । ସେ କହିଛନ୍ତି—

ଏକ ହେବେ ପ୍ରେମେ ଭେଦାଭେଦ ହୁଡି
ରକ୍ତଧାରେ ନୁହେଁ, ଭକ୍ତିଧାରେ ବୁଡ଼ି ।

ଯେତେକାଳ ଭାରତରେ ଏ ଅବସ୍ଥାର ଅବସାନ ନ ହୋଇଛି, ସେତେଦିନ ପର୍ଯ୍ୟନ୍ତ ଆମର ଭାଗ୍ୟ ଉଜ୍ଜ୍ୱଳ ହେବ ନାହିଁ । କୁନ୍ତଳାଙ୍କର 'କିଏ ଧୋଇବ କହ ଏ କଳଙ୍କ କାଳି' ପଦଟି ଓଡ଼ିଆ ପ୍ରାଣରେ ବୀଣାନିନାଦ ଭଳି ଝଂକୃତ ହୋଇଥିଲା । କୁନ୍ତଳାକୁମାରୀ ଆମ ଓଡ଼ିଶାରେ ନ ଜନ୍ମି ଭାରତର ଅନ୍ୟ କେଉଁ ସ୍ଥାନରେ ଜନ୍ମି-ଥିଲେ ତାଙ୍କର "ସ୍ଫୁଲିଙ୍ଗ" ତାଙ୍କର "ଆହ୍ୱାନ" କବିତା ସେହି ସ୍ଥାନର ସୀମା ବାହାରେ ବିଭିନ୍ନ ଭାଷାରେ ଛପା ହୋଇଥାନ୍ତା ବୋଲି ମନେ ହୁଏ । ଭାବରେ, ଭାଷାରେ, ରଚନା ଭଙ୍ଗିରେ, ସଙ୍ଗୀତ ଝଙ୍କାରରେ "ସ୍ଫୁଲିଙ୍ଗ" କୁନ୍ତଳାଙ୍କ ବିପ୍ଳବ ସାହିତ୍ୟରେ ଅମୂଲ୍ୟ ରତ୍ନ । ହୃଦୟକୁ ଆପ୍ଳୁତ କରି ବୀର ରସରେ ଭରି ଦେଲା ଭଳି ସେ କବିତାରେ ସମ୍ପଦ ରହିଛି ।

ଓଡ଼ିଆ ଜାତୀୟ-ଜୀବନ ବର୍ଣ୍ଣନା କରି ଶେଷରେ ସେ ଯେପରି କରୁଣ "ଆହ୍ୱାନ" ଓଡ଼ିଆ ଜାତିକୁ ଦେଇଛନ୍ତି ତାହା ଅନବଦ୍ୟ, ସୁନ୍ଦର । କବି ଲେଖିଛନ୍ତି —

"କିଏ ହସି ହସି ଦେବ ପ୍ରାଣ ଭାଇ ! ବିଶ୍ୱ ଡାକୁଛି କାହାକୁ ?
କିଏ କାନ୍ଦି କାନ୍ଦି ଗାଇବ ଗୀତଟି, ଆଗୁସାର ସବୁ ଦେବାକୁ ?
କିଏ ବହି ନେବ ଛିନ୍ନ ପତାକା, ଉଡ଼ାଇବ ଫେର କେତନ ।
ଆସ ଆରେ ଆସ ତରୁଣ ତପସ୍ୱୀ—କୋଟି କଣ୍ଠ ଡାକେ ସଘନ ।"

ଏହିପରି କେତେ କେତେ ପଦରେ ସ୍ଫୁଲିଙ୍ଗ ଭଳି ବାସ୍ତବରେ କବିତାରେ ଦାହ କଣିକା ଫୁଟାଇଛନ୍ତି । ଭାରତ ଜାତିର ଦୁଃଖରାତ୍ରି ଆଜି ପାହିଛି । ଓଡ଼ିଶା କିଛି ଉନ୍ନତି କରିଛି, କେତେକାଂଶରେ ବିଚ୍ଛିନ୍ନ ଓଡ଼ିଶା-ପ୍ରଦେଶ ସୀମା ଭିତରକୁ ଆସିଛି । କିନ୍ତୁ ବିପ୍ଳବୀ କବି କୁନ୍ତଳା—ଯେ କି ଉତ୍କଳଭାରତୀ ଆଖ୍ୟା ପାଇ ଉତ୍କଳର ବରପୁତ୍ରୀରୂପେ ଗଣ୍ୟା, ତାଙ୍କର ସ୍ୱପ୍ନ ପୂର୍ଣ୍ଣ ସାର୍ଥକ ହୋଇନାହିଁ ବୋଲି ଦେଖାଯାଏ ।—ଭାବୀ କାଳଉପରେ ଏହି ନାରୀ କବିଙ୍କର ଦାବୀ ଅଛି ।

କବି କୁନ୍ତଳା ଆମ ଦେଶରେ ବିପ୍ଳବୀ କବି ଥିଲେ ମଧ୍ୟ ତାଙ୍କ କବିତାଗ୍ରନ୍ଥରେ "ଅଞ୍ଜଳି", 'ପ୍ରେମଚିନ୍ତାମଣି" "ଉଚ୍ଛ୍ୱାସ" ପ୍ରଭୃତି ଅତି ଉତ୍କୃଷ୍ଟ ଭକ୍ତିଭାବ ସମ୍ବଳିତ କବିତା ରଚନାବଳୀ ରହିଛି । ସେ ଏକାଧାରେ ବିପ୍ଳବୀ ଓ ଅନ୍ୟାଧାରେ ଭକ୍ତିମତୀ ଥିଲେ । ତାଙ୍କର କବିତାର ଭାଷାରେ କଷ୍ଟକଳ୍ପନା ନ ଥିଲା । ତାଙ୍କର ଆତ୍ମାର ବାଣୀ କବିତାର ଶରୀର ରୂପ ଧରି ଥିବାରୁ ତାହା ପାଠକ ପାଠିକାମାନଙ୍କ ମନରେ କବିଙ୍କର ଭାବର ଯଥାର୍ଥ ଆଲୋଡ଼ନ ସୃଷ୍ଟି କରିଥାଏ । ଏଥିଲାଗି କୁନ୍ତଳାକୁମାରୀଙ୍କର ଲେଖନୀ ସାର୍ଥକ ହୋଇ ପାରିଛି । ତାଙ୍କର ବୀଣାରେ ଜୀବନର ସପ୍ତସ୍ୱର ସମତାଳରେ ବାଜିଛି । ତାର ସ୍ୱର-ମୂର୍ଚ୍ଛନା ଜନଚିତ୍ତରେ ଆନନ୍ଦ ବେଦନା ସୃଷ୍ଟି କରିପାରିଛି । ବାଣୀ ତାଙ୍କ ହସ୍ତରେ କ୍ରୀଡ଼ନକ ଥିଲା । ତାଙ୍କର ବହୁତ ଅମୂଲ୍ୟ ଲିପି, ପାଣ୍ଡୁଲିପି ତାଙ୍କର

ପାରିବାରିକ ଭାଗ୍ୟ ବିଡ଼ମ୍ବନା ହେତୁ ନଷ୍ଟ ହୋଇଗଲା । ତାଙ୍କର କନ୍ୟା, ପୁତ୍ର, ସପତ୍ନୀ କେହି ସେହି ଗ୍ରନ୍ଥମାନଙ୍କୁ ଲୋକଗୋଚରକୁ ଆଣିଲେ ନାହିଁ । ଏହାଛଡ଼ା ତାଙ୍କର ଗ୍ରନ୍ଥାବଳୀ ଏକତ୍ର ସଂଗୃହିତ ଓ ମୁଦ୍ରିତ ହୋଇ ନ ଥିବାରୁ ତାଙ୍କର ଅମୂଲ୍ୟ ଦାନକୁ ମଧ୍ୟ ଦେଶର ଭାବୀ ବଂଶଧରମାନେ କଳନା କରି ପାରିବେ ବୋଲି ମନେ ହୁଏ ନାହିଁ ।

ଆମ ଦେଶ ଏକ ଅଭିଶପ୍ତ ଦେଶ । ଓଡ଼ିଆ ଜାତି ଶିଳ୍ପ, ଧନ, ବିଦ୍ୟା, ବୁଦ୍ଧି, ସବୁଥିରେ ବଡ଼ ଥିଲେ ମଧ୍ୟ ଏକତା ଓ ଗବେଷଣା ଅଭାବରେ ବିଦଗ୍ଧ ବୃତ୍ତିର ଅଧଃପତନ ଓ ବିନାଶ ହୋଇ ଯାଇଥିବାରୁ ଆମ ଦେଶର ଏହି ପ୍ରତିଭାମୟୀ ବିପ୍ଳବିଣୀ ନାରୀ-କବିଙ୍କର ଅମର କାବ୍ୟ କବିତାର ପୁନର୍ମୁଦ୍ରଣ ସମ୍ଭବ ମଧ୍ୟ ହେଲା ନାହିଁ । ଶିକ୍ଷା, ଆଦର୍ଶ, ଧର୍ମ, ଜାତୀୟତା, ଭକ୍ତିବିପ୍ଳବ, ସବୁ ରକମ ସ୍ୱର ଉତ୍କୃଷ୍ଟ ଭାବରେ ଏହି ମହିମାନ୍ୱିତା ନାରୀଙ୍କ ସାରସ୍ୱତ ବୀଣାରେ ସମତାଳରେ ବାଜୁଛି— ଓଡ଼ିଆ ଆତ୍ମାର ବାଣୀ ବହନ କରି ଏବଂ ଓଡ଼ିଆ ଆତ୍ମାରେ ପୁଲକ ସଞ୍ଚାର କରି ପାରୁଛି । ତାଙ୍କର କାବ୍ୟ କବିତାଗୁଡ଼ିକ ଚିରନ୍ତନ ସାହିତ୍ୟଗୋଷ୍ଠୀ ଭୁକ୍ତ ଓ ତାହା ଦେଶ କାଳ ପାତ୍ରରେ ସୀମିତ ନୁହେଁ । କୁନ୍ତଳାକୁମାରୀ ଓଡ଼ିଆ ଜାତିର ପ୍ରଣମ୍ୟ । ବିପ୍ଳବିଣୀ ଜାତୀୟ କବିଙ୍କ ବାଣୀରେ ଓଡ଼ିଆ ଆତ୍ମା କଥା କହୁଛି ।



# ଲକ୍ଷ୍ମୀବାଈ

ପ୍ରଥମେ ୧୮୫୭ ସାଲର ବିପ୍ଲବକାରୀ ସ୍ୱାଧୀନତା ଯୁଦ୍ଧରେ ଯେଉଁମାନେ ପ୍ରାଣବଳୀ ଦେଇଥିଲେ ସେମାନଙ୍କ ଭିତରେ ଲକ୍ଷ୍ମୀବାଈଙ୍କ ଜୀବନ ଅତ୍ୟନ୍ତ ମହନୀୟ ଓ ବିଚିତ୍ର । ସେ ବସ୍ତୁତଃ ଗୋଆଲିୟର ରଣକ୍ଷେତ୍ରରେ ଯୁଦ୍ଧ କରୁ କରୁ ପ୍ରାଣତ୍ୟାଗ କରିଥିଲେ । ଭଗବାନ୍ ବହୁ ବୀରାଙ୍ଗନା ସୃଷ୍ଟି କରି ସେମାନଙ୍କର ପ୍ରତିଭା ନାନାକ୍ଷେତ୍ରରେ ବିକାଶ କରାଇଛନ୍ତି, କିନ୍ତୁ ଯୁବତୀ ଲକ୍ଷ୍ମୀବାଈଙ୍କ ବୀରତ୍ୱ ଓ ବିପ୍ଲବୀପୂର୍ଣ୍ଣ ଜୀବନର ତୁଳନା କାହାସଙ୍ଗରେ କରିହେବ ନାହିଁ । ତେଇଶ ବର୍ଷ ପୂରିବା ଆଗରୁ ତାଙ୍କ ଜୀବନ ଦୀପ ଲିଭି ଯାଇଥିଲା । କିନ୍ତୁ ସେନାପତି ଭାବରେ, ସୈନିକା ଭାବରେ ସେ ଯେପରି ଯୁଦ୍ଧକୌଶଳ ଦେଖାଇଥିଲେ, ତାହା ଅତି ଅପୂର୍ବ । ତାଙ୍କର ଅଦ୍ଭୁତ ଚରିତ୍ର ଓ ଚରମ ତ୍ୟାଗର ପରାକାଷ୍ଠା ଦେଖାଇ ସେ ଯେ ଜାତୀୟ ସଂଗ୍ରାମର କ୍ଷୁଧା ଭାରତୀୟଙ୍କ ପ୍ରାଣରେ ପ୍ରଜ୍ୱଳିତ କରିଥିଲେ, ତାଙ୍କର ମୃତ୍ୟୁର ନବେ ବର୍ଷ ପରେ ଆଜି ତାଙ୍କ ଦେଶବାସୀ ସେହି ସ୍ୱାଧୀନତାର ସ୍ୱାଦ ପାଇଛନ୍ତି ।

ଇତିହାସ ପୃଷ୍ଠାରୁ ଯାହା ମିଳେ ତହିଁରୁ ବୁଝାଯାଏ ଯେ ସେ ଜାଣିଥିଲେ— ଇଂରେଜର ଯାନ୍ତ୍ରିକ ଅସ୍ତ୍ରଶସ୍ତ୍ର ଓ ପରାକ୍ରମି ସେନାମାନଙ୍କୁ ଜିଣି ପୁଣି ହିଉଜରୋଜଙ୍କ ଭଳି ଇଂରାଜ ସେନାପତିର କୌଶଳ ବ୍ୟର୍ଥ କରି ସେ ତାଙ୍କ ରାଜ୍ୟ ରକ୍ଷା କରି ପାରିବେ ନାହିଁ । ବିପ୍ଳବକାରୀ ସେନାବାହିନୀ ତାଙ୍କର ନ ଥିଲେ ଓ ଯେଉଁମାନେ ଥିଲେ,

ସେମାନେ ବଡ଼ ବିଶୃଙ୍ଖଳିତ ଥିଲେ । ସେମାନଙ୍କ ଉପରେ ରାଣୀଙ୍କର ତୀବ୍ର ପ୍ରଭାବ ଓ ପ୍ରେରଣା ପଡ଼ି ନ ଥିଲା । ଇତିହାସକାର ମାନଙ୍କ ମତରେ ସେ ଯଦି କଲ୍ପିର ପେଶବା ଦରବାରଙ୍କୁ ସେନାପତି ବାଣ୍ଟିଥାନ୍ତେ, ଆଉ ତାଙ୍କର ନିଜପାଖେ ରହିଥିବା ରାଓ ସାହେବ ପେଶବାଙ୍କ ଭଳି ଅଳସ, ମଉଜ, ଭୋଗୀ ଲୋକଙ୍କୁ ସେନାପତି କରାଇ ଯୁଦ୍ଧଭାର ଦେଇ ନ ଥାନ୍ତେ, ତେବେ ଝାନ୍‌ସୀର ଭାଗ୍ୟ ଏପରି ଶୋଚନୀୟ ପରାଜୟକୁ ମାନି ନ ଥାନ୍ତା । ଏପରିକି ତାଙ୍କର ବିଶ୍ୱସ୍ତ ଭକ୍ତଭାଜନ ତାନ୍ତିଆ-ଟୋପିଙ୍କ ଭଳି ରାଜଭକ୍ତ ଦେଶଭକ୍ତ ଓ ପ୍ରତିଭାଶାଳୀ ସେନାପତିକୁ ସେ ଭାବପ୍ରବଣତା ବଶରୁ ମନୋନୀତ ନ କରି ପେଶବାଙ୍କୁ କରିଥିଲେ । ତାନ୍ତିଆଟୋପିଙ୍କୁ ରାଣୀ ବଡ଼ ଭକ୍ତି କରୁଥିଲେ ଓ ତାଙ୍କ ସାହାସ ଯୋଗୁଁ ତାଙ୍କୁ ଭଲ ପାଉଥିଲେ । ଯଦି ରାଣୀ ତାଙ୍କୁ ନିର୍ଭର କରି ସେନାପତି ପଦ ଦେଇଥାନ୍ତେ ତେବେ ଝାନ୍‌ସିକୁ ଇଂରେଜ ଜିଣି ପାରି ନ ଥାନ୍ତା ।

ଗଙ୍ଗା କୂଳରେ ବିଠୁର ବୋଲି ଗୋଟିଏ ସ୍ଥାନରେ ମୋରପନ୍ତ-ତାମ୍ବେ ବୋଲି ଜଣେ ମହାରାଷ୍ଟ୍ରୀୟ ବ୍ରାହ୍ମଣ ଥିଲେ । ମରହଟ୍ଟାମାନେ ଯୁଦ୍ଧରେ ପରାସ୍ତ ହେଲା ପରେ ସେ ବିଠୁରରେ ଗଙ୍ଗାକୂଳରେ ନିର୍ବାସିତ ହେଲା ଭଳି ଅତି ସାଧାରଣ ଗୃହସ୍ଥ ଜୀବନ ଯାପନ କରୁଥିଲେ । ତାଙ୍କର ଧନ ସମ୍ପତ୍ତି ନ ଥିଲା । ତାଙ୍କ ଝିଅଙ୍କ ନାମ ମନୁବାଈ । ସେ ୧୮୩୫ ସାଲରେ (ଅକ୍ଟୋବର ୨୧ ତାରିଖ) ଗଙ୍ଗାର କାଶୀ ନଗରୀର ଅଶିଘାଟ ପାଖରେ ଜନ୍ମ ହୋଇଥିଲେ । ସେ ନାନାସାହେବ ଓ ରାଓସାହେବ-ପେଶବାଙ୍କ ସଙ୍ଗରେ ରହି ବଢିଥିଲେ । ପିଲାଦିନୁ ଲକ୍ଷ୍ମୀବାଈ ଖଣ୍ଡାଖେଳ, ଧନୁଶର ଚଳାଇବା, ଶୀକାର କରିବା, ଘୋଡ଼ା ଚଢ଼ିବା, କୁସ୍ତି ବ୍ୟାୟାମ କରିବାକୁ ବଡ଼ ଭଲ ପାଉଥିଲେ । ପିଲାଦିନେ ସେ ରାମାୟଣ, ଗୀତା

ପଢ଼ିଥିଲେ । ଉକ୍ତ ଗ୍ରନ୍ଥମାନ ତାଙ୍କର ମନରେ ଧର୍ମଭାବ ଓ ଦୃଢ଼ସଂକଳ୍ପ ସୃଷ୍ଟି କରିଥିଲା । ତାଙ୍କ ପିତାମାତା ଲକ୍ଷ୍ମୀବାଈଙ୍କୁ ଧର୍ମଶାସ୍ତ୍ରରେ ଶିକ୍ଷିତା କରାଇଥିଲେ ।

ଘଟଣା ପରିସ୍ଥିତିରେ ଝାନ୍‌ସି ରାଜା ଗଙ୍ଗାଧର ରାଓଙ୍କ ପ୍ରଥମ ସ୍ତ୍ରୀ ମରିଗଲାରୁ ଲକ୍ଷ୍ମୀବାଈଙ୍କ ସୌନ୍ଦର୍ଯ୍ୟ ଓ ଗୁଣ ଦେଖି ସେ ତାଙ୍କୁ ବିବାହ କରିଥିଲେ । ଲକ୍ଷ୍ମୀବାଈଙ୍କ ଠାରୁ ରାଜା ବୟସରେ ବହୁତ ବଡ଼ ଥିଲେ । ଜାୟାହୀନ ରାଜା କନ୍ୟା ଖୋଜିଲା ବେଳେ ଆଠ ବର୍ଷ ବୟସର ମନୁବାଈଙ୍କୁ ବିବାହ କରିବାର ପ୍ରସଙ୍ଗ ମଧ୍ୟସ୍ଥ-ମାନେ ଆଣିଥିଲେ । ଏହି ବାଳିକା ବୃଦ୍ଧ ରାଜାଙ୍କ ପତ୍ନୀ ଲକ୍ଷ୍ମୀବାଈ । ବିବାହ ବେଦୀରେ ମନୁବାଈଙ୍କ ନାଁ ବଦଳାଇ ଲକ୍ଷ୍ମୀବାଈ ରଖାଗଲା ଓ ବିବାହ ପରେ ସେ ରାଣୀ ଭାବରେ ଝାନ୍‌ସିକୁ ଆସିଥିଲେ ।

ଗଙ୍ଗାଧର ରାଓ ଇଂରେଜଙ୍କ ସହିତ ମିତ୍ରତା କରିବା କଥାକୁ ରାଣୀ ବଡ଼ ଅପସନ୍ଦ କରୁଥିଲେ । ଲକ୍ଷ୍ମୀବାଈଙ୍କର ଗୋଟିଏ ପୁଅ ଜନ୍ମହୋଇ ଶିଘ୍ର ମୃତ୍ୟୁ ମୁଖରେ ପଡ଼ିଥିଲା । ଏଥିରେ ରାଜାଙ୍କ ମନ ବଡ଼ ଦୁଃଖ ହେବାରୁ ସେ ରୋଗରେ ପଡ଼ିଲେ । ସେ ଶିଘ୍ର ମରିଯିବେ ବୁଝିପାରି ଦାମୋଦର ରାଓଙ୍କୁ ବଂଶରକ୍ଷା କରିବାକୁ ପୋଷ୍ୟପୁତ୍ର କରିଥିଲେ ।

କିନ୍ତୁ ତତ୍‌କାଳୀନ ଗଭର୍ଣ୍ଣର ଜେନେରାଲ ଡାଲହାଉସୀ ସାହେବ ଏହି ପୋଷ୍ୟପୁତ୍ର କରଣକୁ ସ୍ୱୀକାର ନ କରି ଇଂରେଜ ଅଧିକୃତ ରାଜ୍ୟରେ ଝାନ୍‌ସିକୁ ମିଶାଇ ଦେବାକୁ ଚାହିଲେ । ପୁଣି ରାଣୀଙ୍କୁ ମାସକୁ ପାଞ୍ଚହଜାର ଟଙ୍କା ପେନସନ୍ ଦେବାକୁ ପ୍ରସ୍ତାବ ଦେଲେ । ରାଣୀଙ୍କୁ ଦରବାରରେ ଏ ଖବର ଦେଲାରୁ ସେ ନିଆଁ ଭଳି ଜଳି ଉଠି ଇଂରେଜ ପ୍ରସ୍ତାବ ଅଗ୍ରାହ୍ୟ କରିଥିଲେ । କ୍ରୋଧରେ

ରାଣୀ କହିଲେ ଯେ ସେ କଦାପି ଇଂରେଜର ବଶ ହେବେ ନାହିଁ କି ସେମାନଙ୍କୁ ନିଜ ରାଜ୍ୟରେ ପ୍ରଭୁତ୍ୱ କରିବାକୁ ଦେବେ ନାହିଁ । ଇଂରେଜମାନଙ୍କ ସଙ୍ଗେ ରାଣୀଙ୍କର ମୂଳରୁ ଶତ୍ରୁ ଭାବ ରହିଥିଲା ।

ରାଣୀ ଖୁବ୍ କୂଟବୁଦ୍ଧି ସମ୍ପନ୍ନା ଓ ଚତୁରା ଥିବାରୁ ହଠାତ୍ ଶତ୍ରୁପଣ ଦେଖାଇଲେ ନାହିଁ । ସେ ଗୋଟାଏ ପଟରେ ବିଲାତର ସରକାର ଓ ରାଜାଙ୍କୁ ତାଙ୍କର ଅଭିଯୋଗ ଉପସ୍ଥାପିତ କରିବାକୁ ପ୍ରତିନିଧି ପଠାଇଲେ, ଆଉ ଅନ୍ୟ ପଟରେ ରାଜ୍ୟର ନାରୀମାନଙ୍କୁ ଘୋଡ଼ା ଚଢ଼ା, ବନ୍ଧୁକମାରା ଓ ତୀର ବିନ୍ଧା, ଯୁଦ୍ଧର ନାନା କୌଶଳ ସବୁ ଶିକ୍ଷା ଦେବାକୁ ଲାଗିଲେ । ସେ ଯୁଦ୍ଧ ପ୍ରସ୍ତୁତିରେ ଲାଗିଗଲେ । ଏଣେ ହାତରେ ସମୟ ରଖିବାପାଇଁ ବିଲାତ ରାଜ-ଦରବାରକୁ ତାଙ୍କର ଓକିଲ ପଠାଇଥାନ୍ତି ।

୧୮୫୭ ସାଲ ମେ ୧୦ ତାରିଖ ଦିନ ସିପାହି ବିଦ୍ରୋହର ପ୍ରଥମ ସୂତ୍ର-ପାତ ହେବାରୁ ସେ ଯୋଉଁ ସୁବିଧା ସୁଯୋଗ ଖୋଜୁଥିଲେ, ତାହା ପାଇଲେ । ସେମାନେ ଦିଲ୍ଲୀରେ ମହା ଗଣ୍ଡଗୋଳ କରି ବାହାଦୂର ଶାହଙ୍କୁ ଭାରତର ସମ୍ରାଟ ବୋଲି ଘୋଷଣା କଲେ । ଏହି ସିପାହି ବିଦ୍ରୋହ ଘଟଣା ବନାରସ, ଲକ୍ଷ୍ନୌ, କାନପୁର, ଆଲ୍ଲାହାବାଦ ଯାଏ ବ୍ୟାପିଲା । ଝାନ୍ସିର ସେନାମାନେ ଇଂରେଜର ଅଫିସରଙ୍କ ହତ୍ୟା କରିବାରେ ଲାଗିଲେ । ଜବଲପୁରରେ ଥିବା ଇଂରେଜ କମିସନର ସାହେବଙ୍କୁ ଲକ୍ଷ୍ମୀବାଈ ଖବର ଦେଲେ ଯେ ସେ ରାଜ୍ୟ ଶାସନ କରୁଛନ୍ତି, ଓ ଦେଶର ଅରାଜକତା ବେଆଇନ କାମକୁ ଦମନ କରୁଛନ୍ତି । ଇଂରେଜ ହାଇରାଣରେ ଥାଏ । ଏ ଖବର ପାଇ ରାଣୀଙ୍କୁ ଅନୁମତି ଦବାଛଡ଼ା ତାର ଆଉ ଉପାୟ ନ ଥିଲା । ସେ ସମୟରେ ଲକ୍ଷ୍ମୀବାଈ ପୂରାପୂରି ଝାନ୍ସିର ଗାଦିରେ ବସି ରାଣୀ ହୋଇ ଦେଶ ଶାସନ କଲେ ।

ସେ କଚେରି କରି ଫୌଜଦାରୀ ଓ ଦେଓ୍ୱାନୀ—ଲୋକଙ୍କର ସବୁ ରକମ ମକଦମା, ଗୁହାରି ବିଚାର କରୁଥିଲେ ଓ ଅତିଶୀଘ୍ର ଲୋକଙ୍କୁ ନ୍ୟାୟ ଦେଉଥିଲେ । ଦେଶର ପୁରୁଷ ଓ ନାରୀ ସମସ୍ତଙ୍କୁ ସେ ଯୁଦ୍ଧବିଦ୍ୟା ଶିକ୍ଷା ଦେବାର ବନ୍ଦୋବସ୍ତ କରିଥିଲେ । ସମସ୍ତଙ୍କୁ ବାଧ୍ୟ କରାଇ ଶାରୀରିକ ବ୍ୟାୟାମ କରାଉଥିଲେ । ତାଙ୍କ ଦେଶରେ କେହି ରୋଗରେ ପଡୁଥିଲେ ନିଜେ ରାଣୀ ଯାଇ ରୋଗୀକୁ ଦେଖି ତାକୁ ଆରାମ କରାଉଥିଲେ ଓ ଶାନ୍ତ୍ୱନା ଦେଉଥିଲେ । ନିଜେ ସେ ଦେଖିବାକୁ ଡେଙ୍ଗା, ଖୁବ ଗୋରା ଓ ସୁନ୍ଦର-ଅବୟବ କାନ୍ତି ବିଶିଷ୍ଟା ଥିଲେ । ରାଜ୍ୟର ଲୋକେ ଭଲ ଖାଇ ପିଇ ଖୁବ୍ ସୁଖରେ ଥିବାରୁ ରାଣୀଙ୍କୁ ଧନର ପ୍ରତୀକ ସାକ୍ଷାତ୍ ଲକ୍ଷ୍ମୀ-ରୂପିଣୀ ବୋଲି ଭାବୁଥିଲେ ।

ରାଣୀ ଝାନ୍‌ସି ଶାସନକାରିଣୀ ହେଲେ ଦେଖି ସଦାଶିବ ରାଓ ନିଭେଲକାର ବୋଲି ଝାନ୍‌ସି ରାଜାଙ୍କର ଜଣେ ଭାଇ ସିଂହାସନରେ ବସି ରାଜା ହେବ ବୋଲି ଝାନ୍‌ସି ବିରୁଦ୍ଧରେ ଲଢ଼ାଇକଲେ । ରାଣୀ ତାଙ୍କର ଶିକ୍ଷିତ ସେନାବାହିନୀକୁ ନେଇ ନିଜେ ଯାଇ ସଦାଶିବ ରାଓଙ୍କୁ ଯୁଦ୍ଧରେ ଶୋଚନୀୟ ଭାବରେ ପରାଜିତ କଲେ ।

ସିପାହି ବିଦ୍ରୋହର ପ୍ରାରମ୍ଭକାଳରେ ଇଂରେଜ ସେନାମାନେ ବୁନ୍ଦେଲଖଣ୍ଡ ରାଜ୍ୟ, ବିନ୍ଧ୍ୟ ଓ ଯମୁନା ମଧ୍ୟର ରାଜ୍ୟମାନଙ୍କରୁ ପରାଜିତ ଓ ବିତାଡ଼ିତ ହେଉଥାନ୍ତି । ପରାଜିତ ସେନାମାନେ ପୁଣି ସେହି ରାଜ୍ୟମାନଙ୍କୁ ଜିଣିବାପାଇଁ ଯୋଜନା କଳ୍ପନା କରୁଥାନ୍ତି । ସେନାପତି ହିଉଜରୋଜ ଏହି ପରାଜିତ ସେନାମାନଙ୍କୁ ଏକାଠି କରି ଠିକଣାଖି ଯୁଦ୍ଧ ଯୋଜନା କରୁ ଥିଲେ ଓ ଯୁଦ୍ଧରେ ସେନାପତିତ୍ୱ କରୁଥିଲେ । ୧୮୫୭ ସାଲ ସେପ୍ଟେମ୍ବର ମାସରେ

ଦିଲ୍ଲୀର ପତନ ପରେ ପୁଣି ଡିସେମ୍ବର ମାସରେ କାନପୁର ପତନ ପରେ ଏବଂ ମାର୍ଚ୍ଚ ୩ ତାରିଖରେ ଲକ୍ଷ୍ନୌ ପତନ ପରେ ଇଂରେଜ ଝାନ୍‌ସିରେ ହେଉଥିବା ବିଦ୍ରୋହ ଓ ବିଦ୍ରୋହୀଙ୍କ କେନ୍ଦ୍ର ଭାଙ୍ଗି ଦେବାକୁ ମନସ୍ଥ କଲେ ।

୧୮୫୮ ମାର୍ଚ୍ଚ ୨୩ ତାରିଖରେ ରୋଜ୍ ସାହେବ ଝାନ୍‌ସି ଘେରିଲେ ଓ ଦଖଲ କଲେ । ମାର୍ଚ୍ଚ ୨୫ ତାରିଖରେ ଯୁଦ୍ଧ ଭୀଷଣଆକାର ଧରିଲା । ଇଂରେଜ ସେନାପତିମାନେ ଦୂରବୀକ୍ଷଣ ଯନ୍ତ୍ରରେ ଦୂରରୁ ଦେଖିଲେ ଯେ ଝାନ୍‌ସିରୁ ନାରୀମାନେ କମାଣରେ ବାରୁଦ ପୂରାଇ କମାଣ ଲଢୁଛନ୍ତି । ଏ ଦୃଶ୍ୟରେ ସାହେବମାନେ କାବା ହୋଇଗଲେ ରାଣୀଙ୍କ ମୁସଲମାନ ସେନାପତି ମହମଦ୍-ଘାଉସ୍ ଯେଉଁ କମାଣ ଫୁଟାଉଥିଲା ତାହାର ତୀବ୍ରତା ଇଂରେଜ କମାଣମାନଙ୍କୁ ସବୁ ମୂକ କରି ଦେଇଥିଲା । ରାଣୀ ନିଜେ ଯୁଦ୍ଧକ୍ଷେତ୍ରକୁ ଯାଇ ସେନାମାନଙ୍କୁ ଉତ୍ସାହିତ କରୁଥିଲେ ଓ ଦୁର୍ଗ ଉପରେ ବୁଲି ଯୁଦ୍ଧ ଦେଖୁଥିଲେ । କିନ୍ତୁ ମାର୍ଚ୍ଚ ୩୧ ତାରିଖ ଆଗକୁ ଯୁଦ୍ଧ ଧିମେଇଲା । ରାଜ୍ୟରକ୍ଷା ଶକ୍ତି କମି ଆସିଲା । ଏକଥାର ଖବର ପାଇ କଲ୍ପିରୁ ତାନ୍ତିଆଟୋପି ଯୁଦ୍ଧ ଚଳାଇବାକୁ ଆସିଲେ । ମାତ୍ର ବିଶୃଙ୍ଖଳିତ ଦୁର୍ବଳମନା ଝାନ୍‌ସି ସେନା ତାଙ୍କ କଥା ନ ମାନି ଅସ୍ତ୍ରଶସ୍ତ୍ର ଛାଡ଼ି ଯୁଦ୍ଧ ଭୂଇଁରୁ ପ୍ରାଣନେଇ ପଳାଧୁଞ୍ଚା ଦେଲେ ଓ ବିଶୃଙ୍ଖଳିତ ସେନାମାନେ ପଳାଇଲେ । ଏ ଅବସ୍ଥା ଦେଖି ହିଉଜରୋଜ୍ ଝାନ୍‌ସି ଉପରେ ଖୁବ୍ ବେଗରେ ମାଡ଼ ଦେଇ ଦ୍ୱିଗୁଣ ବେଗରେ ସେନାମାନଙ୍କୁ ଛିନ୍ନଛତ୍ର କରି ଝାନ୍‌ସି ଅଧିକାର କଲେ ।

ରାଜ୍ୟ କମାଣ ନିଆଁରେ ଜଳିବା ଦେଖି ରାଣୀ ଚିତ୍କାର କରି ଆକୁଳ ହୋଇ କାନ୍ଦିକରି ସେହି ଝାନ୍‌ସି ସହରରେ ଜଳୁଥିବା ନିଆଁରେ ପ୍ରାଣାହୁତି ଦେବାକୁ ବସିଲେ । କିନ୍ତୁ ତାଙ୍କ ପିତା ଓ ଅନ୍ୟ

ସର୍ଦ୍ଦାରମାନେ ତାଙ୍କୁ ଏପଥରୁ ନିବର୍ତ୍ତାଇଲେ । ସେମାନେ କହିଲେ ଯେ ଅନ୍ୟସ୍ଥାନରୁ ତୁମେ ଝାନ୍‌ସି ଲାଭ ପାଇଁ ଯୁଦ୍ଧ କଲେ ଝାନ୍‌ସି ଫେରି ପାଇବ । ତୁମ୍ଭ ଜୀବନ ଥିଲେ ସମସ୍ତେ ଉତ୍ସାହିତ ହୋଇ ଯୁଦ୍ଧ କରିବେ । ରାଣୀ ଗୁରୁ ଏବଂ ଆତ୍ମୀୟମାନଙ୍କ କଥା ଶୁଣି ଅଗତ୍ୟା ଧରି ପ୍ରାଣ ରଖିଲେ ।

ରାଣୀ ଏହି ପରାମର୍ଶ ପାଇ ପ୍ରାଣ ରଖି ତୁମା ହେଲେ ନାହିଁ । ଜ୍ୟେଷ୍ଠ ପୁଅ ଦାମୋଦରଙ୍କୁ ପିଠିରେ ବାନ୍ଧି ଅଳ୍ପ ସେନା ଓ ନାରୀ-ସେନାଙ୍କୁ ନେଇ ଘୋଡ଼ା ଉପରେ ବସି ସେ ଇଂରେଜ ସେନାବ୍ୟୂହ ଭିତରକୁ ରାତିରେ ପଶି ଗଲେ ଓ ସେନାବ୍ୟୂହ ଭାଙ୍ଗି ଦେଲେ । ପୁରୁଷ ଯୋଦ୍ଧାବେଶ ପିନ୍ଧିଥିବାରୁ ରାଣୀଙ୍କୁ ଚିହ୍ନିବାକୁ ଇଂରେଜସେନାଙ୍କର ବହୁତ ସମୟ ଲାଗିଲା । ସେନାପତି ବୋକର୍ ଇଂରାଜ ତରଫରୁ ଗୋଟିଏ ଲୋକ ହାତରେ କିଛି ଉପହାର ଦେଇ ତାଙ୍କୁ ଯୁଦ୍ଧରୁ ନିବୃତ୍ତ ହେବାକୁ ପରାମର୍ଶ ଦେଇ ପଠାଇଲେ । ସେ ଦୂତକୁ ଦେଖି ପ୍ରଜ୍ଜ୍ୱଳିତା ସିଂହୀ ଭଳି ରାଗରେ ମୁହଁ ଫେରାଇ ଦେଲେ । ରାଣୀ ସେହି ବ୍ୟକ୍ତିକୁ ଖଣ୍ଡାରେ ଗୋଟିଏ ମାରିବାରୁ ସେ ଘୋଡ଼ାରୁ ଖସି ପଡ଼ିଲା ।

ସେହି ଅବସ୍ଥାରେ ସାରାରାତି ଘୋଡ଼ାରେ ଦୌଡ଼ି ୧୦୨ ମାଇଲ ଦୂରର କଲ୍‌ପି ନାମକ ସ୍ଥାନରେ ରାଣୀ ପହଞ୍ଚିଲେ । ସେଠାରେ ସେ ରାଓ ସାହେବ ପେଶବା ଓ ତାନ୍ତିଆଟୋପିଙ୍କୁ ଦେଖିଲେ । ସେଠାରେ ବିପ୍ଳବକାରୀ ସେନାମାନେ ଇଂରେଜ ସହିତ ଖୁବ୍ ଲଢ଼ି ସେମାନଙ୍କୁ କଛଗାଁ ଓ କଲ୍‌ପି ନିକଟରେ ଅବସନ୍ନ କଲେ । ମାତ୍ର ଶେଷରେ ଇଂରେଜ କଲ୍ପି ଅଧିକାର କଲେ । ଏଥିପାଇଁ ସେମାନଙ୍କୁ ପ୍ରଚୁର କ୍ଷତି ସହିବାକୁ ପଡ଼ିଲା । ଇଂରେଜ କଲ୍ପି ଦଖଲ

କରି ବି ସେଠାର ବିପ୍ଳବକାଙ୍କ୍ଷୀ ନେତାନେତ୍ରୀମାନଙ୍କୁ ଡରି ସେମାନଙ୍କ ଦେହ ଛୁଉଁ ନ ଥିଲା ।

ଶେଷରେ କଣ ହେବ ଏହି ପ୍ରଶ୍ନବାଚକ ଶବ୍ଦ ଠିଆ ହେଲା । ପେଶବା ସର୍ଦ୍ଦାରମାନେ ପରାମର୍ଶ ଦେଲେ, ଯୁଦ୍ଧ ଛାଡ଼ି ରାଜସ୍ଥାନକୁ ପଳାଇଯିବା ନଚେତ୍ ମହାରାଷ୍ଟ୍ର ଦେଶକୁ ଲେଉଟି ଯିବା । କିନ୍ତୁ ରାଣୀ ଜିଦ୍ କରି କହିଲେ, ପଳେଇଲେ କି ଫେରିଲେ ଆମେ ଇଂରେଜ ସଙ୍ଗେ ଲଢ଼ି ତାକୁ ହଟାଇ ପାରିବୁ ନାହିଁ । ସେଥିପାଇଁ ଆମର ବିକୁଆ ସେନାମାନଙ୍କୁ ଅକ୍ତିଆର କରିବାକୁ ହେବ—ଏହି ଠାରୁ ହିଁ ଗୁଲ ଗୋଆଲିଅରକୁ ଯିବା । ଲୋକେ କାବାହୋଇ ପ୍ରଶ୍ନ କଲେ—ଗୋଆଲିୟର ?

ସମସ୍ତେ ଗୋଆଲିୟର ଗଲେ । ସେ ରାଜ୍ୟର ରାଜା ସିନ୍ଧିୟା ତାର ସେନାବାହିନୀ ନେଇ ଲକ୍ଷ୍ମୀବାଈଙ୍କ ସେନାଦଳକୁ ଆକ୍ରମଣ କଲେ । କିନ୍ତୁ ରାଣୀ ଏପରି ତାକତ୍‌ରେ ସିନ୍ଧିୟାର ସୈନ୍ୟ-ମାନଙ୍କ ସାଥିରେ ଲଢ଼ିଲେ ଯେ ଗୋଆଲିୟର ରାଜା ଜୟାଜି ସିନ୍ଧିୟା ଯୁଦ୍ଧମାଡ଼ରୁ ରକ୍ଷା ପାଇବାପାଇଁ ନିଜ ଦେଶ ଛାଡ଼ି ଆଗ୍ରା ପଳାଇ ଯାଇ ଇଂରେଜ ଶିବିରରେ ରହି ତାଙ୍କର ଶରଣ ନେଲେ । ଜୟାଜି ଗୁଲିଗଲା ପରେ ଝାନ୍‌ସୀ ରାଣୀ ଓ ବିଦ୍ରୋହୀ ସିପାହି ସେନାମାନେ ଗୋଆଲିୟର ଦୁର୍ଗ ଦଖଲ କରି ସେହି ଦୁର୍ଗରେ ନିଜ ଦେଶ ଝାନ୍‌ସୀର ଜାତୀୟପତାକା ଉଡ଼ାଇଲେ ।

ଇଂରେଜମାନେ ଥରକୁ ଥର ଝାନ୍‌ସୀ ସେନାଙ୍କ ହାତରେ ଲାଞ୍ଛିତ ଓ ପରାଜିତ ହୋଇ ଆତଙ୍କିତ ହେଲେ । ଗୋରା ସୈନ୍ୟ ଓ ତାଙ୍କ ଯୁଦ୍ଧ କର୍ତ୍ତାମାନେ ସମସ୍ତେ ମନେକଲେ ଯେ ରାଣୀ ଥିବାରୁ ଝାନ୍‌ସୀ ସୈନ୍ୟଙ୍କୁ ପରାଜିତ କରି ହେଉନାହିଁ । ସାହସିନୀ ରାଣୀଙ୍କୁ

ହଟେଇ ଦେଇ ପାରିଲେ ଗୋରା ସୈନାମାନେ ଝାନ୍‌ସୀ ଦଖଲ କରିପାରିବେ । ରାଣୀଙ୍କୁ ବିନାଶ ନ କଲେ ଏପଟରେ ସିପାହି ବିଦ୍ରୋହକୁ ଦମନ କରି ହେବନାହିଁ ବୋଲି ସେମାନଙ୍କର ଧାରଣା ବଦ୍ଧମୂଳ ହେଲା । ସେମାନେ ଖୁବ୍ ବ୍ୟଗ୍ର ହୋଇ କ୍ଷିପ୍ରଭାବରେ ଯୁଦ୍ଧପାଇଁ ପ୍ରସ୍ତୁତ ହୋଇଗଲେ । ସେନାପତି ହ୍ୟୁଜରୋଜ୍ ବିଲାତରେ ଥିଲେ । ତାଙ୍କୁ ପୁଣି ଇଂରେଜମାନେ ଡକାଇ ଏ ଯୁଦ୍ଧାଭିଯାନର ଶ୍ରେଷ୍ଠ ସେନାନାୟକ କଲେ ।

ରାଣୀ ମଧ୍ୟ ତାଙ୍କ ଲୋକଙ୍କୁ ଯୁଦ୍ଧପାଇଁ ପ୍ରସ୍ତୁତ ହେବାକୁ କହିଲେ । କାରଣ ସେ ଜାଣିଥିଲେ, ଏଥର ଇଂରେଜ ପ୍ରତିଶୋଧ ନ ନେଇ ତାଙ୍କୁ ଛାଡ଼ିବ ନାହିଁ । ଝାନ୍‌ସୀକୁ ହସ୍ତଗତ କରିବାକୁ ଶେଷ ଚେଷ୍ଟା କରିବ । କିନ୍ତୁ ତାଙ୍କର ଦୁର୍ବଳ ଓ ଭୋଗୀ ସେନାପତି ରାଓ ସାହେବ ପେଶବା ଓ ତାଙ୍କ ତଳେ ଥିବା ସେନାମାନେ ଏ ଯୁଦ୍ଧ ଆକରରେ ସେପରି ଉତ୍ସାହିତ ଓ ବ୍ୟଗ୍ର ନ ହୋଇ ଉଦାସୀନତା ଦେଖାଇଲେ ।

ଏହା ଦେଖି ରାଣୀ ଅତି ବ୍ୟସ୍ତ ହୋଇ ପଡ଼ିଲେ । ପରାଜୟ ଆଶଙ୍କା ତାଙ୍କ ମନରେ ଦେଖାଗଲା । ସେନାମାନେ ତାଙ୍କ ଅଧୀନରେ ନ ଥିବାରୁ ସେ ପରିସ୍ଥିତିକୁ କେବଳ ସମ୍ଭାଳିବା ଛଡ଼ା ଆଉ କିଛି କରି ପାରିଲେ ନାହିଁ । ଶେଷରେ ସେ ସ୍ଥିର କଲେ ଯେ ସେ ସୈନ୍ୟମାନଙ୍କୁ ନିଜେ ଚାଳନା କରି, ନିଜେ ନେତୃତ୍ୱ ନେଇ, ଯୁଦ୍ଧ ଚଳାଇବେ ।

୧୮୫୮ ଜୁନ୍ ୧୭ ତାରିଖରେ ଗୋଆଲିୟର ଠାରେ ଯୁଦ୍ଧାରମ୍ଭ ହେଲା । ଇଂରେଜ ସେନାପତି ହ୍ୟୁଜରୋଜ୍ ପକ୍‌କା କୌଶଳୀ ସେନାପତି ଓ କୂଟବୁଦ୍ଧି ସମ୍ପନ୍ନ ଧୂରନ୍ଧର ରାଜନୀତିଜ୍ଞ ଥିବାରୁ

ଜୟାଜୀ ସିନ୍ଧିଆଙ୍କ ଇଂରେଜ ପକ୍ଷ ସେନାଚାଳନ କରି ନେତୃତ୍ୱ ନେବା ପାଇଁ ସ୍ଥିର କଲେ । ତେଣୁ ସେ ସେନାମାନଙ୍କ ଆଗରେ ଚାଲିଲେ ନେତା ଓ ସେନାନାୟକ ହୋଇ ।

ଯେଉଁ ଗୋଆଲିୟର ସେନାବାହିନୀ ବିଦ୍ରୋହୀମାନଙ୍କ ସହିତ ଯୋଗଦେଇ ଥିଲେ ସେମାନେ ଧନ୍ଦାରେ ପଡ଼ି ବିଚାରିଲେ ଯେ ନିଜ ରଜାଙ୍କ ବିରୁଦ୍ଧରେ କିପରି ଯୁଦ୍ଧ କରିବେ । କିନ୍ତୁ ତଥାପି ସେମାନେ ସେଇ ଧନ୍ଦାରେ ବୁଦ୍ଧିସ୍ଥିର କରି ସମ୍ମିଳିତ ଶକ୍ତି ଲଗାଇ ଏପରି ଯୁଦ୍ଧ କଲେ ଯେ ଇଂରେଜ ଝଲେମାନେ ଆଗେଇ ପାରିଲେ ନାହିଁ । ପ୍ରଥମ ଦିନ ଯୁଦ୍ଧରେ ବିଜୟ ସଙ୍କେତ ଇଂରେଜକୁ ଦିଶିଲା ନାହିଁ । ଜୁନ୍ ୧୮ ତାରିଖ ସକାଳ ହେଲା । ଭରି ଗରମ ପଡ଼ୁଥାଏ । ରାଣୀ କେବଳ ଲେମ୍ବୁ ପାଣିରେ ମିଶାଇ ଟିକିଏ ପିଉଥାନ୍ତି । ସେ ସୈନିକଙ୍କ ପରି ନାଲି ପୋଷାକ ପିନ୍ଧିଥାନ୍ତି । ତାଙ୍କର ନରନାରୀ ସେନାମାନେ ମଧ୍ୟ ନାଲି ପୋଷାକରେ ସଜ୍ଜିତ ହୋଇ ଥିଲେ ବ୍ରିଟିଶ କମାଣ ଦାଗୁ ଥାଏ । ହଠାତ୍ ରାଣୀ ତାଙ୍କର ଘୋଡ଼ାରେ ଚଢ଼ି ଯୁଦ୍ଧଭୂଇଁକୁ ଡେଇଁ ପଡ଼ିଲେ । ବ୍ରିଟିଶ ସେନାପତିମାନେ ରାଣୀଙ୍କ ଅଦ୍ଭୁତ ସାହସ ଦେଖି ହତବାକ୍ ହତବମ୍ଭ ହୋଇ ଚମକି ପଡ଼ିଲେ ।

ହଠାତ୍ ଗୋଟିଏ ଗୋରାସେନାର ବେୟୋନେଟ୍ ରାଣୀଙ୍କ ସ୍ତନର ତଳପାଖରେ ପଶିଯାଇ ରକ୍ତସ୍ରାବ ହେଲା । ସେ ସିଂହୀ ଭଳି ବେଦନା ଚାପି ବୁଲି ପଡ଼ିଲେ ଓ ଆତତାୟୀକୁ ଖଣ୍ଡା ରେ ଦ୍ୱିଖଣ୍ଡ କରିଦେଲେ । ତାଙ୍କର ପ୍ରିୟ ସଙ୍ଗିନୀ ଓ ଦାସୀ ମନ୍ଦାର ମାଳା ଆଉ ଏକ ଗୋରାସେନା ଗୁଳିରେ ଟଳି ପଡ଼ିବା ଦେଖି ସେ କ୍ରୋଧରେ, ବ୍ୟଥାରେ ଜଳି ଉଠି ସେଇ ସୈନିକକୁ ଖଣ୍ଡାଚୋଟରେ

ଟିକ ଟିକ କରି ହାଣି ଦେଲେ । ପୁଣି ଗୋଟିଏ ଗୋରାସୈନ୍ୟର ଗୁଳି ରାଣୀଙ୍କ ବାଁ ପଟ ଜଙ୍ଘରେ ପଶିଗଲା । ସେ ବାଁ ହାତରୁ ଖଣ୍ଡା ଛାଡ଼ି ଦେଇ ବାଁ ହାତରେ କ୍ଷତର ରକ୍ତଚାପି ଧରି ଡାହାଣ ହାତରେ ସେହି ଆତତାୟୀକୁ ହାଣିଦେଲେ । ସେ ଲୋକ ସେଇଠି ମରି ପଡ଼ିଲା । ସେତେବେଳେ ତାଙ୍କ ଚାରିପଟ ଘେରି ତିନି ଚାରିଗୋଟି ମାତ୍ର ବିପକ୍ଷ ସେନା ରହିଥିଲେ । ତନ୍ମଧ୍ୟରୁ ଜଣେ ସେନା ତା ଖଣ୍ଡାରେ ରାଣୀଙ୍କ ମଥା ଉପରେ ଚୋଟେ ମାରିବାରୁ ତାଙ୍କର ଡାହାଣ ପାଖ ମୁଣ୍ଡ କଟିଗଲା । ପୁଣି ତାଙ୍କ ଡାହାଣ ଆଖିରୁ ଭୀଷଣ ରକ୍ତସ୍ରାବ ହେଲା । ସେହି ଶୋଚନୀୟ ମର୍ମନ୍ତୁଦ ଅବସ୍ଥାରେ ରାଣୀ ସେହି ଗୋରାସେନାର ପଛ ଆଡ଼୍ ଖଣ୍ଡାରେ ମାରି ତାର କାନ୍ଧ ହାଣି ଦେଲେ । ତାପରେ ହଠାତ୍ ତାଙ୍କର ବିଶ୍ୱସ୍ତ ପଠାଣ ସର୍ଦ୍ଦାର ଗୁଲମହମ୍ମଦ ଆସି ରାଣୀକୁ ଆହତ କରିଥିବା ସୈନିକକୁ ଟିକ ଟିକ କରି ହାଣି ଦେଲେ । ତାପରେ ସେଠାରେ ଥିବା ଗୋରା ସେନାଙ୍କୁ ହାଣିବାକୁ ସର୍ଦ୍ଦାର ଧାଇଁବାରୁ ସେମାନେ ପ୍ରାଣଭୟରେ ପଳାଇଗଲେ ।

ରାଣୀଙ୍କ ପାର୍ଶ୍ୱଚରମାନେ ତାଙ୍କୁ ଏହିପରି ରକ୍ତାକ୍ତ ଅବସ୍ଥାରେ ବାବାଗଙ୍ଗା ଦାସ ନାମକ ସନ୍ୟାସୀଙ୍କ କୁଟୀରକୁ ଉଠାଇ ନେଇଗଲେ । ସାଧୁ ରାଣୀଙ୍କୁ ଚିହ୍ନି ତାଙ୍କ ତୁଣ୍ଡରେ ଗଙ୍ଗା ଜଳ ଦେଲେ । ତାଙ୍କ କାନରେ 'ହରହର ମହାଦେଓ' କହିବା ବେଳେ ରାଣୀ ତା ଶୁଣି ଶୁଣି ଅଚେତ ହୋଇଗଲେ । କିଛିକ୍ଷଣ ପରେ ଚେତାପାଇ ରାଣୀ ଧୀରେ ଧୀରେ 'ନମୋଃ ଭଗବତେ ବାସୁଦେବାୟ' ବୋଲି ବିକମ୍ପିତ ତୁଣ୍ଡରେ କହିବା ପରେ ସଙ୍ଗେ ସଙ୍ଗେ ତାଙ୍କ ପ୍ରାଣବାୟୁ ଉଡ଼ିଗଲା ଅନନ୍ତ ଧାମକୁ ।

ସାଧୁ ଆକୁଳ କଣ୍ଠରେ କାନ୍ଦୁଥିବା ସର୍ଦ୍ଦାରଙ୍କୁ ଖୁବ୍ ଶାନ୍ତ୍ୱନା ଦେଲେ । ଶୁଖିଲା ଘାସ ସ୍ତୂପରେ ଚିତାଗି ପ୍ରସ୍ତୁତ ହେଲା । ଧୂଳି ଦେହ ଧୂଳିରେ ମିଶିଗଲା । ରାଣୀଙ୍କର ଶେଷ ଇଚ୍ଛା ଥିଲା ଯେ ତାଙ୍କ ଶବ ଇଂରେଜ ହାତରେ ପଡ଼ିବ ନାହିଁ । ତାହା ପାଳିତ ହେଲା ।

ଗୋଆଲିୟରରେ ଝାନ୍ସୀ ରାଣୀଙ୍କ ଚିତା ଉପରେ ଗୋଟିଏ ସୁନ୍ଦର ସ୍ମୃତିସ୍ତମ୍ଭ ତୋଳା ହେଲା, ଯେଉଁଠି କି ତାଙ୍କର ରାଜ୍ୟର ସହସ୍ର ସହସ୍ର ନରନାରୀ ଭକ୍ତି ସମ୍ଭ୍ରମରେ ବୀରାଙ୍ଗନା ଲକ୍ଷ୍ମୀଙ୍କୁ ନମସ୍କାର କରିବାକୁ ଯାଆନ୍ତି । ସେ ଝାନ୍ସୀରେ ଶାସନ କଲାବେଳେ ଲୋକେ ଅନ୍ନବସ୍ତ୍ର ପ୍ରାଚୁର୍ଯ୍ୟରେ ଚଳୁ ଥିବାରୁ ତାଙ୍କୁ ସାକ୍ଷାତ୍ ଲକ୍ଷ୍ମୀଙ୍କ ଅବତାର ବୋଲି କହୁଥିଲେ । ତାଙ୍କ ମୃତ୍ୟୁ ପରେ ତାଙ୍କୁ ମା ଦୁର୍ଗାଙ୍କ ଅବତାର ବୋଲି କହି ପୂଜା କରିଥିଲେ ।

ନବେ ବର୍ଷ ଅନ୍ତର ହେଲାଣି । ତାଙ୍କର ତ୍ୟାଗମୟ ଜୀବନର ସ୍ୱପ୍ନକୁ ସାର୍ଥକ କରିଛନ୍ତି ଭାରତବାସୀ । ଜାତିପ୍ରତି ସ୍ୱାଧୀନତା ଆସିଛି । ତାଙ୍କ ଦେଶବାସୀ ତାଙ୍କର ଯୋଗ୍ୟ ଉତ୍ତରାଧିକାରୀ ହେବାର କଳ୍ପନା ସେ କରୁଥିଲେ । ତାହା ଭବିଷ୍ୟତ୍ ଦେଖିବ ।

ଭାରତର ସ୍ୱାଧୀନତା ସଂଗ୍ରାମରେ ଯେଉଁ ସୁସନ୍ତାନମାନେ ଜନନୀ ଜନ୍ମଭୂମିର ସମ୍ମାନ ପାଇଁ ପ୍ରାଣବଳି ଦେଇଛନ୍ତି, ବିପ୍ଳବ ଅଗ୍ନିରେ ଝାସ ଦେଇଛନ୍ତି, ସେମାନଙ୍କ ମଧ୍ୟରେ ଲକ୍ଷ୍ମୀବାଈଙ୍କ ବୀରତ୍ୱ, ଗୁରୁତ୍ୱ ଓ ଅଦମନୀୟ ସଂକଳ୍ପ ଏବଂ ନିର୍ଭୀକ ସାହସର ପରାକାଷ୍ଠା କେହି ଦେଖାଇ ନାହାନ୍ତି ଏ କଥା ସତ୍ୟ । ତେଣୁ ସେ ଏ ଶତାବ୍ଦୀର ବିପ୍ଳବ ଜୟନ୍ତୀର ପୂଜ୍ୟା— ମା ଦୁର୍ଗାଙ୍କର ପ୍ରତୀକ ରୂପା ବୋଲି ମନେ ହୁଏ । ସେ ଚାଲି ଯାଇଛନ୍ତି—ଚିରସ୍ମରଣୀୟା

ହୋଇ । ତାଙ୍କର କୀର୍ତ୍ତି ଅବିନଶ୍ୱର ହୋଇ ସଂସାରରେ ବଞ୍ଚି ରହିଥିବ—ଯେପରି ବଞ୍ଚିଛନ୍ତି ଫ୍ରାନ୍‌ସର ଜୋଆନ୍ ଅଫ ଆର୍କଙ୍କର—ଆମର ବୀରରମଣୀ ରାଣୀ ଦୁର୍ଗାବତୀଙ୍କର । ସେ ମୁସଲମାନ ମନ୍ତ୍ରୀ ଆସଫ୍ ଖାଁଙ୍କ ବିଶ୍ୱାସଘାତକତାରେ ରାଜ୍ୟ ହରାଇ ଥିଲେ—ଯୁଦ୍ଧ ଭୂମିରେ ଆହତା ହୋଇ ନିଜେ ଛୁରିରେ ନିଜ ଗ୍ରୀବାକୁ ଭୁଷି ଦେଇ ଯୁଦ୍ଧକ୍ଷେତ୍ରରେ ପ୍ରାଣତ୍ୟାଗ କରିଥିଲେ, ମାତ୍ର ପରାଜୟର ଗ୍ଲାନି ନେଇ ରାଜ୍ୟକୁ ଫେରି ନ ଥିଲେ କି ବିଧର୍ମୀ ମୁସଲମାନଙ୍କ ହାତରେ ନିଜର ଅଙ୍ଗ ସ୍ପର୍ଶ ହେବାର ସୁଯୋଗ ଏବଂ ଅବକାଶ ସେମାନଙ୍କୁ ଦେଇ ନ ଥିଲେ ।—



# ସୋଫିଆ ବାର୍ଡିନା

ସ୍ୱେଚ୍ଛାଚାରୀ ଜାର୍‌ଙ୍କ ନିଷ୍ପେଷଣରେ କେତେଥର ବିପ୍ଳବୀଙ୍କ ଅସ୍ତିତ୍ୱ ଲୋପ ପାଇଛି । କିନ୍ତୁ ରକ୍ତବୀଜଦଳଙ୍କର କଅଣ ମୃତ୍ୟୁ ଅଛି ? ଫାଶୀ ରସିରେ ଉଦ୍ଧତ କଣ୍ଠରୁଦ୍ଧ ହୋଇଯାଏ ସତ୍ୟ; କିନ୍ତୁ ସେମାନଙ୍କର ବିଦାୟ-ବାଣୀ ଚରମ ଆକୃତି ନେଇ ଜନଶକ୍ତିର ହୃଦୟରେ ଯେଉଁ ସ୍ପନ୍ଦନ ଆଣେ, ତାହା ଅମର, ଅକ୍ଷୟ । ସେମାନେ ମୃତ୍ୟୁରେହିଁ ଅମର ହୋଇ ରହନ୍ତି । ସେଥିଲାଗି ଭିକ୍ଟର ହ୍ୟୁଗୋ କହିଥିଲେ—"ସୈନିକମାନଙ୍କର ଆକ୍ରମଣ ବନ୍ଦ କରାଯାଇପାରେ କିନ୍ତୁ ଚିନ୍ତା ଓ ଭାବର ଆକ୍ରମଣକୁ କୌଣସିମତେ ଅବରୁଦ୍ଧ କରାଯାଇ ପାରେ ନାହିଁ ।"

ରୁଷ ଜାତିର ଅସ୍ଥିମଜ୍ଜାରେ ପରାଧୀନତାର ଅପମାନ ଓ ଦୁଃଖର ବେଦନା ଏବଂ ଜଗତରେ ମେରୁଦଣ୍ଡ ସଳଖ ରଖି ବଞ୍ଚି ରହିବାର ଯେଉଁ ଆକାଙ୍‌କ୍ଷା ଜାଗିଥିଲା, ରୁଷ୍‌ନାରୀର ଭାବ ତହିଁରେ ରହିଛି । ଘର କଞ୍ଜାଳର ସୁଖ ଶାନ୍ତିମୟ କୋଳ ଛାଡ଼ି ବିପ୍ଳବର ଅଶାନ୍ତିପୂର୍ଣ୍ଣ କୋଳାହଳକୁ ସେମାନଙ୍କୁ ଆସିବାକୁ ପଡ଼ିଥିଲା ।

ଥରେ ଜାର୍‌ର ଅତ୍ୟାଚାରରେ ଲୁପ୍ତ ପ୍ରାୟ ବିପ୍ଳବୀ ଦଳଙ୍କର ଏକ ସଙ୍କଟ ମୁହୂର୍ତ୍ତରେ ନେତାହୀନ ବିଚ୍ଛିନ୍ନ କର୍ମିଦଳଙ୍କୁ ସଂଘବଦ୍ଧ କରି ସଂଗ୍ରାମ ସମ୍ମୁଖରେ ଆସି ଛିଡ଼ା ହେଲେ ଏକ ଭଦ୍ରବଂଶୀୟ ନାରୀ— ସୋଫିଆ ବାର୍ଡିନା ।

୧୮୫୬ ଖ୍ରୀଷ୍ଟାବ୍ଦରେ ମର୍ଶାଙ୍କ ସହରରେ ସୋଫିଆ ବାର୍ଡିନାଙ୍କର ଜନ୍ମ । ତାଙ୍କର ପିତା ଏଡ଼େ ବଡ଼ ଅତ୍ୟାଚାରୀ ଦୁର୍ଦ୍ଦାନ୍ତ ପୁଲିସ କର୍ମଚାରୀ ଥିଲେ ଯେ, ସେ ସମୟରେ ତାଙ୍କର ତୁଳନା ନ ଥିଲା । ସୋଫିଆଙ୍କର ମାଆ ସ୍ୱାମୀଙ୍କର ସ୍ୱେଚ୍ଛାଚାରିତାରେ ସର୍ବଦା ସନ୍ତ୍ରସ୍ତ ହୋଇ ରହୁଥାନ୍ତି । ସ୍ଥାନୀୟ ସରକାରୀ ବାଳିକା ବିଦ୍ୟାଳୟରେ ତାଙ୍କର ଶିକ୍ଷା ଆରମ୍ଭ ହୋଇଥିଲା । କୃତିତ୍ୱର ସହିତ ସେଠାରେ ଶିକ୍ଷା ସମାପ୍ତ କରି ଉଚ୍ଚଶିକ୍ଷା ଲାଭ କରିବା ପାଇଁ ସେ ୧୮୭୧ ଖ୍ରୀଷ୍ଟାବ୍ଦରେ ମସ୍କୋକୁ ଯାଇଥିଲେ । ମସ୍କୋ କଲେଜ ଛାତ୍ରମାନଙ୍କ ସହିତ ମିଳାମିଶା କରିବା ଦ୍ୱାରା ସେ ପ୍ରଥମେ ନିହିଲିଷ୍ଟ ଚିନ୍ତାଧାରା ସମ୍ପର୍କରେ ଆସିଲେ । ଏ ସମୟରେ ତାଙ୍କ ସହିତ ଆଉ ଦୁଇଜଣ ସହପାଠୀ ନିହିଲିଷ୍ଟଙ୍କର ପରିଚୟ ଘଟିଲା । ପରେ ସେମାନେ ତାଙ୍କର ପ୍ରଚାର କାର୍ଯ୍ୟ ଓ କାରାଗାରର ଚିରସଙ୍ଗିନୀ ହୋଇଥିଲେ ।

ଏହି ଦୁଇ ବାନ୍ଧବୀଙ୍କ ସାଙ୍ଗରେ ସୋଫିଆ ସେ ସମୟର ପ୍ରଧାନ ନାରୀ ଶିକ୍ଷାକେନ୍ଦ୍ର ଜୁରିକ୍‌କୁ ଯାଇଥିଲେ । ସେହି ସମୟରୁ ସେମାନେ ଉତ୍ପୀଡ଼ିତ ଜନସାଧାରଣଙ୍କ ମୁକ୍ତି ପାଇଁ ଆତ୍ମୋତ୍ସର୍ଗ କରିଥିଲେ । ଜୁରିକରେ ସେ ସମୟରେ ସ୍ତ୍ରୀଲୋକମାନଙ୍କର ଏକ ସମିତି ଥିଲା । ସେ ସମିତିର ଯେଉଁମାନେ ସଭ୍ୟା ଥିଲେ, ସେମାନଙ୍କର ବୟସ ଅଠର ବର୍ଷରୁ କମ୍ ଥିଲା । ସୋଫିଆ ସେହି ନାରୀସମିତିର, ଜଣେ ବିଶିଷ୍ଟ କର୍ମୀ ହୋଇ ଉଠିଲେ । ସେ ବରାବର କହୁଥିଲେ, "ଯୁଗ ଯୁଗ ଧରି ଧନିକ ସମ୍ପ୍ରଦାୟ ଜନସାଧାରଣଙ୍କୁ ଅନ୍ନହୀନ, ବସ୍ତ୍ରହୀନ ଓ ମୂକ ନିରନ୍ନଃସ୍ୱ କରି ରଖିଛନ୍ତି । ଆଘାତ ଉପରେ ଆଘାତ ଦେଇ ସେମାନଙ୍କୁ ନେଇ ପଶୁତ୍ୱର ଶେଷ ସୀମାରେ ପହଞ୍ଚାଇଛନ୍ତି । ଏହାର ପ୍ରାୟଶ୍ଚିତ୍ତ ତ ସେମାନଙ୍କୁ କରିବାକୁ ହେବ । ନରକର ପଙ୍କରୁ ଉଠାଇ ସେମାନଙ୍କୁ କହିବାକୁ ହେବ—"ଉଠ, ଜାଗ, ତୁମ୍ଭେମାନେ ମଧ୍ୟ ମନୁଷ୍ୟ ।"

ନାସ୍ତି ସମିତିର ସଭ୍ୟମାନେ ନିଜର ଉଚ୍ଚଶିକ୍ଷାର ଆଶା ଛାଡ଼ି ସାଧାରଣଙ୍କର ଉନ୍ନତି ପାଇଁ ପ୍ରାଣପଣ କରି ଲାଗିବାକୁ ଦୃଢ଼ସଂକଳ୍ପ କଲେ । ସୋଫିଆ ଗୁପ୍ତ ସମିତିର ଦଳର ସୁବିଧା ପାଇଁ ଡାକ୍ତରୀ ପଢ଼ିବାକୁ ଆରମ୍ଭ କଲେ । କାରଣ ସେମାନେ ଭଲରୂପେ ଜାଣିଥିଲେ ଯେ, ଡାକ୍ତରଣୀଙ୍କର ସବୁଠାରେ ଅବାଧ ଗତି । କିନ୍ତୁ ରୁଷ ସରକାରଙ୍କର ଶ୍ୟେନ ଦୃଷ୍ଟିରେ ସବୁ କୌଶଳ ଧରାପଡ଼ିଗଲା । ସଙ୍ଗେ ସଙ୍ଗେ ସେମାନଙ୍କୁ ଜୁରିକରୁ ବୁକୁରୁ ବୁଜୁଲା ବାନ୍ଧି ଯିବାକୁ ହେଲା । ସେଠାରୁ ସେମାନେ ପାରିସ୍‌କୁ ଗଲେ । କିନ୍ତୁ ସେଠାରେ ମଧ୍ୟ ରୁଷ ସରକାରଙ୍କ ଜ୍ୱାଳାରେ ସେମାନଙ୍କର ଡାକ୍ତରୀ ପାଠପଢ଼ା ହେଲା ନାହିଁ । ବାଧ୍ୟ ହୋଇ ବାର୍ତ୍ତିନା ପାଠରେ ଜଳାଞ୍ଜଳି ଦେଇ ଧାତ୍ରୀବିଦ୍ୟା ପଢ଼ିବାକୁ ଜେନେଭା ଗଲେ ।

୧୮୭୪ ଖ୍ରୀଷ୍ଟାବ୍ଦରେ ଜୁରିକର ପୁରୁଣା ପିଲା ଓ ରୁଷର ବିଭିନ୍ନ ପ୍ରଦେଶର ବିଦ୍ରୋହୀସଙ୍ଘ ସମ୍ମିତ ମିଳିତ ହୋଇ ଏକ ବିରାଟ ଗୁପ୍ତ ସମିତି ପ୍ରତିଷ୍ଠା କଲେ । କେବଳ ରୁଷିଆର ନୁହେଁ, ସମଗ୍ର ମାନବଜାତିର ଇତିହାସରେ ସେ ଥିଲା, ଉଜ୍ଜ୍ୱଳ ଶୁଭ ମୁହୂର୍ତ୍ତ, ସ୍ୱାଧୀନତାସଂଗ୍ରାମରେ ଏକ ମୁଷ୍ଟିମେୟ ଯୁବସମଷ୍ଟି । ସେମାନେ ପ୍ରବଳ ପରାକ୍ରାନ୍ତ ଶତ୍ରୁ ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିବା ପାଇଁ ଦୃଢ଼ପ୍ରତିଜ୍ଞ ହେଲେ । ସ୍ୱାଧିକାରବୋଧର ଏପରି ଦୃଢ଼ ସ୍ଥିର ଓ ଅବିଚଳିତ ମନୋଭାବ ଯେତେବେଳେ ଗୋଟିଏ ପରାଧୀନ ଜାତି ମନରେ ଜାଗେ, ସେତେବେଳେ ତାର ବିଜୟ ଅଭିଯାନ ପ୍ରତି ସ୍ତରେ ସ୍ତରେ ସାଫଲ୍ୟମଣ୍ଡିତ ହୋଇ ଉଠେ । ସେତେବେଳେ ଆଉ ତାର ପଦ କମ୍ପିତ ହୁଏନା— ହୃଦୟ ଥରେ ନା— ଅବିଶ୍ୱାସରେ ହତାଶରେ ଶରୀର ମନ ଶିଥିଳ ହୋଇ ଆସେନା । କେବଳ ମାତ୍ର ଏହି ସ୍ୱାଧିକାରବୋଧ ନେଇ ସେମାନେ ବି ବିଦ୍ରୋହୀ

ହୋଇ ଉଠୁଥିଲେ । ସେମାନଙ୍କର ଶକ୍ତି ସ୍ୱଳ୍ପ—ଅଭିଜ୍ଞତା ସ୍ୱଳ୍ପ । ଯାହା ନିମିତ୍ତ ସେମାନଙ୍କର ଏହି ମୃତ୍ୟୁ ବରଣ, ସେମାନେ ମଧ୍ୟ ବିରୂପ । ତେବେ ସେମାନଙ୍କର ଦାବୀ ଯେ ନ୍ୟାୟ ସଙ୍ଗତ ଓ ନ୍ୟାୟର ଜୟ ଅବଶ୍ୟମ୍ଭାବୀ—ଏହି ବିଶ୍ୱାସ ଥିଲା ସେମାନଙ୍କର ଆଶ୍ରୟହୀନ ଜୀବନର ଏକମାତ୍ର ସମ୍ବଳ ।

ବିପ୍ଳବୀମାନେ ଋଷିଆର ଜନସାଧାରଣଙ୍କୁ ବିଦ୍ରୋହୀ କରି ତିଆରି କରିବା ଉଦ୍ଦେଶ୍ୟରେ ପ୍ରତି କଳକାରଖାନାରେ ସାମାନ୍ୟ ମୂଲିଆ ହୋଇ ପଶୁ ଥିଲେ । ସେମାନଙ୍କ ସାଙ୍ଗରେ ମିଶିବା ଯୋଗୁଁ ବିପ୍ଳବୀମାନେ ନିଜ ନିଜର କର୍ମକ୍ଳାନ୍ତ ସୌନ୍ଦର୍ଯ୍ୟ ଓ ମୁଖଶ୍ରୀକୁ ସୂର୍ଯ୍ୟାତପରେ ଓ ବର୍ଷା ଶୀତରେ ଦିନକୁ ଦିନ ତମ୍ବାପରି ଫିକା କରି ଦେଉଥିଲେ । ସୁନ୍ଦର ସୁକୁମାର ହାତରେ ଲୁହାକଣ୍ଟା ପିନ୍ଧିଥିଲେ । ଏହିପରି ଭାବରେ ସେମାନେ ଅନ୍ଧକୂପରେ ତିଳ ତିଳ କରି ଆତ୍ମଦାନ ଦେଇ ଶ୍ରମିକମାନଙ୍କୁ ମନୁଷ୍ୟତାରେ ଉଦ୍‌ବୁଦ୍ଧ କରି ତୋଳିଥିଲେ, ପ୍ରାଣ ଦେଇଥିଲେ ।

ବାର୍ଡିନା ଓ ତାଙ୍କ ସଙ୍ଗିନୀମାନେ ଏହିପରି ଭାବରେ ଗୋଟିଏ କାରଖାନାରେ ଦୈନିକ ମଜୁରୁଣୀ କାମ ନେଲେ । ସେ ସମୟର ସେମାନଙ୍କର ଅବସ୍ଥା ବର୍ଣ୍ଣିବାର ନୁହେଁ । ଦରପୋଡ଼ା ରୁଟି ଓ ପଚା ବାସି ମାଂସ ଥିଲା ସେମାନଙ୍କର ସେତେବେଳର ପ୍ରଧାନ ଖାଦ୍ୟ । ଶୟନ ବ୍ୟବସ୍ଥାର କଦର୍ଯ୍ୟ ଅମାନୁଷିକତା କଥା କହିଲେ ନ ସରେ । କୁଲିଙ୍କ କୋଠରୀ ଭିତରେ ଯେଉଁ ଭିଡ଼ ବନ୍ଧା ହୋଇଥାଏ, ତାହା ଏତେ ଅପ୍ରଶସ୍ତ ଯେ, କୁକୁର ବିରାଡ଼ିଙ୍କ ପାଇଁ ବି ନଅଣ୍ଟ । ତହିରେ ଶଯ୍ୟା ଗ୍ରହଣ କରିବାକୁ ଯାଉଥିଲେ ମୁଣ୍ଡ ନିର୍ଦ୍ଦୟ ଭାବରେ ବାଡ଼େଇ ହୋଇ ଯାଉଥାଏ । ଆଉ ଗଦାର କାମ କରୁଥିଲା ବସ୍ତାଏ କୁଟା ଅଳଆ ।

ତିଳିଆର କାମ କରେ ପୁଳାଏ କଣ୍ଢା ହୋଇଥିବା ଛଣବାଡ଼ା । ତୂଳା ଲୁଗାର ଚିହ୍ନ ନ ଥିଲା । ମଶା ଗୁଲରପୋକ ଛଡ଼ା ଅନ୍ୟ କେତେ ପ୍ରକାର ବିଷାକ୍ତ ପୋକ ଶ୍ରମକ୍ଲାନ୍ତ ମଜୁରିଆଙ୍କୁ ରାତିଟାଯାକ ଉନ୍ନିଦ୍ର କରି ରଖନ୍ତି । ଶୀତଦିନେ ଏଇସବୁ ଘରେ ଶୋଇଥିବା ମଜୁରିଆଙ୍କ ନିଶ୍ୱାସ ବନ୍ଦ ହେବାର ଉପକ୍ରମ ହୋଇଯାଏ । ଏତେ ବିଷାକ୍ତ ବଦ୍ଧ ପବନ ! କିନ୍ତୁ ସେମାନଙ୍କ ସାରା ଜୀବନ ଉପରେ ଯେ ବିଧାତାଙ୍କର ଅଭିଶାପ ଜଡ଼ିତ ହୋଇଛି । ଯୁଗ ପରେ ଯୁଗ ମୌନମୂକ ହୋଇ ସେମାନେ ଏ ଦୁଃଖ ସହି ଆସିଛନ୍ତି; କିନ୍ତୁ ସୁକୁମାର ବିଳାସ ଲାଳିତ ଆଜନ୍ମ ସୁଖୀ ଏହି ଝିଅଟି କେତୋଟି ଏହି ଜଘନ୍ୟ ଅବସ୍ଥାକୁହିଁ ଜୀବନର ପରମ ଆଲମ୍ବନ କରି ବରି ନେଲେ । ଏହାର ବିନିମୟରେ ସେମାନେ ଗୃହିଁଥିଲେ-ଗଣ ଜାଗରଣ ଓ ସେମାନଙ୍କର ଟିକିଏ ସହାନୁଭୂତି ।

କାରଖାନା ଜୀବନର ସମସ୍ତ ଦୁଃଖ କଷ୍ଟ ମୁଣ୍ଡରେ ବହି ବାର୍ଣ୍ଣିନା ନିଜ ସହକର୍ମିଣୀମାନଙ୍କ ସହିତ ଶିକ୍ଷାନବିଶ ମିସ୍ତ୍ରୀ ଓ ସହକାରୀ ରୂପରେ ଛଦ୍ମ ନାମରେ, ଛଦ୍ମ ପରିଚୟରେ ମସ୍କୋର ଏକ କାରଖାନାରେ ପ୍ରବେଶ କଲେ । ସ୍ତ୍ରୀ ଓ ପୁରୁଷଙ୍କ ରହିବା ଜାଗା ପୃଥକ୍ ଅଲଗା । ବାର୍ଣ୍ଣିନା ସେଥିଯୋଗୁଁ ପ୍ରଥମେ ମଜୁରୁଣୀମାନଙ୍କ ଭିତରେ ବିପ୍ଳବ-ବାଣୀ ପ୍ରଚାର କରିବାକୁ ଲାଗିଲେ, କିନ୍ତୁ ମଜୁରୁଣୀମାନଙ୍କ ନୈତିକ ଜୀବନ ବଡ଼ ଜଘନ୍ୟ ଥିଲା । କଳ କାରଖାନାରେ କିରାଣି, ଅଧକ୍ଷ ଓ ପୁରୁଷ ମଜୁରିଆଙ୍କ ପଶୁପ୍ରବୃତ୍ତି ହାତରୁ କେହି ନିସ୍କୃତି ପାଉ ନ ଥିଲେ । ସୁତରାଂ ବାଧ୍ୟ ହୋଇ ଏମିତି ଜଘନ୍ୟ ଅବସ୍ଥାରେ ରହି ସ୍ତ୍ରୀମାନଙ୍କ ଭିତରେ କାମ କରିବା ଅସମ୍ଭବ ମଣି, ବାର୍ଣ୍ଣିନା ଲୁଚେଇ ଲୁଚେଇ ସାରାଦିନ ଖଟିବାପରେ ସନ୍ଧ୍ୟାବେଳକୁ ପୁରୁଷ କୁଲିଙ୍କ ବସ୍ତିକୁ ପଳାଇ ଯିବାକୁ ଲାଗିଲେ । ତାଙ୍କର

ଐକାନ୍ତିକ ଚେଷ୍ଟା ଓ ନିଷ୍ଠାରେ ଶୀଘ୍ର ସୁଫଳ ଫଳିଲା । କିନ୍ତୁ ଦୁର୍ଭାଗ୍ୟ କ୍ରମେ ଦିନେ ସେ ଅଧ୍ୟକ୍ଷଙ୍କ ଆଖିରେ ପଡ଼ିଗଲେ । କାଳେ ସବୁ ଗୁପ୍ତ କଥା ଧରା ପଡ଼ିବ, ଏହି ଭୟରେ ସେ ସଙ୍ଗେ ସଙ୍ଗେ କାରଖାନା ପରିତ୍ୟାଗ କଲେ । ସେହିଦିନଠୁଁ ତାଙ୍କର କାରଖାନା ଜୀବନର ଅବସାନ ହେଲା ।

ସେ ସମୟରେ ସେଣ୍ଟପିଟର୍ସବର୍ଗରେ ବିପ୍ଳବୀମାନେ ବହୁତ ଘର ଭଡ଼ା କରି ରହିଥିଲେ । ଘରଗୁଡ଼ିକ ଥିଲା ସେମାନଙ୍କର ବୋମ ଡିନାମାଇଟ୍ ତିଆରି କରିବା କାରଖାନା, ପୁଣି ଗୁପ୍ତ ବୈଠକର ନିରାପଦ ସ୍ଥାନ । ଫେରାରୀ ଆସାମୀମାନେ ମଧ୍ୟ ପୁଲିସ ଡରରେ ଆସି ଏ ସବୁ ଘରେ ଲୁଚି ରହୁଥିଲେ । ଉଚ୍ଚ ଶିକ୍ଷିତ ଧନୀ ସନ୍ତାନଠାରୁ ଆରମ୍ଭ କରି ଦରିଦ୍ରତମ କୃଷକ ପର୍ଯ୍ୟନ୍ତ ଏକ ମହାଉଦ୍ଦେଶ୍ୟରେ ଅନୁପ୍ରାଣିତ ହୋଇ ଏହିସବୁ ଘରେ ମିଳିତ ହେଉଥିଲେ । ପୁଲିସର ଶ୍ୟେନଦୃଷ୍ଟି ଏଡ଼ିବା ପାଇଁ ରୋଷେଇବାସ, ଝାଡ଼ୁ ବାହାରୁ ଆରମ୍ଭ କରି ସମସ୍ତ ପ୍ରୟୋଜନୀୟ କାମମାନ ନିଜ ହାତରେ ଅମ୍ଳାନ ବଦନରେ ସେ କରୁଥିଲେ । ଏହି ଘରେ ଥିବା ସମୟରେ ବାର୍ଡ଼ିନା ଓ ତାଙ୍କର ପଚିଶ ଜଣ ସଙ୍ଗିନୀ ଦଳରୁ କୌଣସି ଏକ ସ୍ତ୍ରୀଲୋକର ବିଶ୍ୱାସ ଘାତକତା ଯୋଗୁଁ ପୁଲିସ ହାତରେ ଧରାପଡ଼ିଲେ । ଏହା ୧୮୭୬ ଖ୍ରୀଷ୍ଟାବ୍ଦରେ ଘଟିଥିଲା ।

ସେମାନଙ୍କର ଯାହା ବିଚାର ହୋଇଥିଲା, ତାହା "Trials of the Fifty" ନାମରେ ପରିଚିତ ହୋଇ ରହିଛି । ଦୁଇ ବର୍ଷକାଳ ସେମାନଙ୍କର ବିଚାର-ପ୍ରହସନ ଚାଲିଲା । ଏହା ଭିତରେ ଜାର୍‌ତନ୍ତ୍ରର ନିର୍ମମ ଶାସନ ତାଙ୍କର ଅପୂର୍ବ ସ୍ୱାସ୍ଥ୍ୟକୁ ଶୋଷି ନେଇଥିଲେ ହେଁ ତାଙ୍କର ମନର ତେଜ ବିନ୍ଦୁମାତ୍ର ନଷ୍ଟ

ହୋଇ ନ ଥିଲା, ବରଂ ମନର ସ୍ୱାସ୍ଥ୍ୟକୁ ପୂର୍ବ ବଜାୟ ରଖିଥିଲା । ତେଇଶ ବର୍ଷର ବାଳିକା ସେତେବେଳେ ଜଜ୍‌ଙ୍କ ସାମନାରେ ନିଜର ଅନ୍ତରର ସତ୍ୟ ଆକାଂକ୍ଷା ନିର୍ଭୟ- ନିଷ୍କମ୍ପ କଣ୍ଠରେ ବ୍ୟକ୍ତ କଲେ ଏବଂ ତାଙ୍କର ଉଦ୍ଦେଶ୍ୟ ଓ କାର୍ଯ୍ୟାବଳୀକୁ ବର୍ଣ୍ଣନା କଲେ, ସେତେ-ବେଳେ ଜଜ୍ ଓ ସଭାସଦ୍‌ମାନେ ତାଙ୍କର ଦୃଢ଼ତା ବ୍ୟଞ୍ଜକ ଭୟଶୂନ୍ୟ ମୁଖକୁ ବିସ୍ମିତ ସ୍ତବ୍ଧ ଭାବରେ ଚାହିଁ ରହିଥିଲେ । ସେମାନଙ୍କର ଲୁବ୍ଧ ଝାପସା ଆଖି ଆଗରେ ଜାତିର ଅମ୍ଲାନ କିରଣଦୀପ୍ତ ଭାଗ୍ୟ-ଗଗନ ମ୍ଳାନ ବୋଲି ମନେ ହୋଇଥିଲା । ତୁଚ୍ଛ ପ୍ରାଣର ସମସ୍ତ ଭୟ ପରିହାର କରି ସେ ଉଚ୍ଚ କଣ୍ଠରେ ପ୍ରଚାର କରିଥିଲେ—"ମୁଁ ନିଜ ଯୋଗୁଁ ତୁମ୍ଭମାନଙ୍କୁ ତିଳେ ମାତ୍ର ଦୁଃଖ ଦେବାକୁ ଚାହେଁ ନାହିଁ । ମୋର ବିଶ୍ୱାସ, ଏପରି ଏକ ଦିନ ଆସିବ, ଯେଉଁଦିନ ଏ ଅଳସ, ଜଡ଼ ଜାତିର ମୋହ ନିଦ୍ରା ତୁଟିଯିବ । ଜାଗ୍ରତ ହୋଇ ସେମାନେ ଆତ୍ମାନୁଶୋଚନାରେ ଉନ୍ମାଦ ଓ ପାଗଳ ହୋଇପଡ଼ିବେ । × × × ତୁମ୍ଭେମାନେ ପଶୁବଳରେ ବଳୀ । ବର୍ତ୍ତମାନ ଯାହା ଇଚ୍ଛା ତାହା ଅତ୍ୟାଚାର ଚଳାଇ ପାର; କିନ୍ତୁ ଈଶ୍ୱର ଆମର ସହାୟ । ଇତିହାସର କ୍ରମୋନ୍ନତି ଆମର ଆଶା ଭରସା ଓ ମନର ବଳହିଁ ଆମ୍ଭମାନଙ୍କର ପ୍ରକୃତ ବଳ । ଆଜି ତା ନିକଟରେ ଚିରଦିନ ପଶୁବଳ ହାରି ମାନି ଆସୁଛି—ଇତିହାସହିଁ ଏହାର ଜ୍ୱଳନ୍ତ ସାକ୍ଷୀ ।"

ବିଚାରରେ ୱାରନାଗ୍ରୀ ବାର୍ଡିନାଙ୍କର ନଅବର୍ଷ ସଶ୍ରମ କାରାଦଣ୍ଡ ହେଲା । ହସ ହସ ମୁଖରେ ସେ ଏ ଦଣ୍ଡକୁ ମୁଣ୍ଡ ନୁଆଁଇ ଗ୍ରହଣ କଲେ । କାରଣ ସେ ଭଲରୂପେ ଜାଣିଥିଲେ, ସେମାନଙ୍କର ନିର୍ବାସନ, ଫାଶୀ, କ୍ଷୁଧାର ଜ୍ୱାଳା, କଣ୍ଟକମୟ ସଜ୍ଜା, ବନ୍ଦିଶାଳାର ଅନ୍ଧକାର ଓ ଶିକୁଳି ହାରି ଛଡ଼ା ଆଉ ପ୍ରାପ୍ୟ କିଛି ନାହିଁ । କିନ୍ତୁ ତାଙ୍କର ଅସୁସ୍ଥ ଶରୀର ଯୋଗୁଁ ଦଣ୍ଡ ହ୍ରାସ ହେଲା—ନିର୍ବାସନ ହେଲା ସାଇବେରିଆରେ ଯାବଜ୍ଜୀବନ ପାଇଁ ।

ବନ୍ଧୁବାନ୍ଧବ ଓ ସହକର୍ମୀମାନଙ୍କଠାରୁ ବହୁ ଦୂରରେ,ଅମନୁଷ୍ୟ ରୁଷ ପୁଲିସର ନିର୍ମମ ଅତ୍ୟାଚାରରେ ଦିନ ପରେ ଦିନ ତାଙ୍କର ଦେହ ଦୁର୍ବଳ ହୋଇ ଉଠିଥିଲା । ଶେଷରେ ଏ ଅସହ୍ୟ ଯନ୍ତ୍ରଣାରୁ ମୁକୁଳିବା ପାଇଁ ଜୀବନ ବିପନ୍ନ କରି ସେ ଇଲିସଠାରୁ ପଳାଇ ଯିବାକୁ ଉଦ୍ୟମ କଲେ । ସାଇବେରିଆର ପ୍ରହରୀବେଷ୍ଟିତ ପାଚେରୀ ଡେଇଁ ପଳାଇଯିବା ସାଧାରଣ ମନୁଷ୍ୟ ପକ୍ଷରେ ଅସମ୍ଭବ, କିନ୍ତୁ ଜୀର୍ଣ୍ଣଶୀର୍ଣ୍ଣା ବୀରବାଳା ଆଶ୍ଚର୍ଯ୍ୟ କୌଶଳରେ ୧୮୮୦ ଖ୍ରୀଷ୍ଟାବ୍ଦର ୨୫ ତାରିଖ ଡିସେମ୍ବରରେ ସଦା ଜାଗ୍ରତ ପୁଲିସର ଶ୍ୟେନ ଦୃଷ୍ଟିକି ଏଡ଼ି ଇଉରୋପ ପଳାଇ ଆସିଲେ । ପରବାସୀ ବିପ୍ଳବୀ ବନ୍ଧୁମାନେ ବାନ୍ଧବୀଙ୍କୁ ଫେରି ପାଇ ଆନନ୍ଦ ଓ ଦୁଃଖର ଆତିଶଯ୍ୟରେ ଅଭିଭୂତ ହୋଇ ପଡ଼ିଲେ; କିନ୍ତୁ ଏ ବାର୍ତ୍ତିନା ତାଙ୍କର ସେହି ପୂର୍ବ ବାର୍ତ୍ତିନା ନୁହେଁ, ତାର ଛାୟାବିଶେଷ ମାତ୍ର ରହିଥିଲା । ବନ୍ଧୁମାନେ ବାର୍ତ୍ତିନାଙ୍କର ଏ କଙ୍କାଳସାର ଅବସ୍ଥା ଦେଖି ନିଜର ଛାତି ଭିତରେ ଅସହ୍ୟ ବେଦନା ଅନୁଭବ କଲେ । ସେହି ଭଙ୍ଗା ସ୍ୱାସ୍ଥ୍ୟ ଓ ଦେହ ନେଇ ସେ ଦେଢ଼ବର୍ଷ ଛଦ୍ମବେଶରେ ରୁଷର ଏକ ପ୍ରାନ୍ତରୁ ଅନ୍ୟ ପ୍ରାନ୍ତ ପର୍ଯ୍ୟନ୍ତ ବୁଲି ନବ ସୃଷ୍ଟିର ଆଶା ଘେନି ଜନସାଧାରଙ୍କ ଭିତରେ ପ୍ରଚାର କରିବାକୁ ଲାଗିଲେ । କିନ୍ତୁ ଫେରାର ଜୀବନ କାର୍ଯ୍ୟର ବିଭିନ୍ନ ପ୍ରକାର ଅସୁବିଧା ତାଙ୍କୁ ଅସ୍ଥିର କରିବାକୁ ଲାଗିଲା । ଫଳତଃ ବନ୍ଧୁମାନେ ତାଙ୍କୁ ଦେଶ ଛାଡ଼ି ଯିବା ପାଇଁ ଖୁବ୍ ଆକୁଳ ଭାବରେ ଅନୁରୋଧ କରିଥିଲେ । ଶେଷରେ ବାଧ୍ୟ ହୋଇ ସେ ରୁଷିଆ ଛାଡ଼ି ଜେନେଭାରେ ପହଞ୍ଚିଲେ । କିନ୍ତୁ ଏପରି ଜଡ଼ବତ୍ ଲୁଚି ଗୋଟାଏ ଜାଗାରେ ପଡ଼ି ରହିବା ତାଙ୍କୁ ଅସହ୍ୟ ବୋଧହେଲା । ରକ୍ତହୀନତା ଓ ସ୍ନାୟବିକ ଦୌର୍ବଲ୍ୟ ପ୍ରଭୃତି ରୋଗରେ ତାଙ୍କ ଦେହ ଓ ମନର ଅବସ୍ଥା ଦିନକୁ ଦିନ ଏତେ ଶୋଚନୀୟ ହୋଇ ପଡ଼ିଲା ଯେ,ଶେଷରେ

ସେ ଏକ ଟୁକ୍ରା ଖବର କାଗଜ ମଧ୍ୟ ପଢ଼ିପାରିଲେ ନାହିଁ । ତେବେ ସୁଦ୍ଧା ବନ୍ଧୁବାନ୍ଧବଙ୍କୁ ଖୁସି କରିବା ପାଇଁ ହସ ହସ ମୁହଁରେ ସମସ୍ତ ବାଧା ଏଡ଼ିଦେଇ ସେ ଜୀବନକୁ ହାଲୁକା ରଖିବାକୁ ଚେଷ୍ଟା କରୁଥିଲେ, କିନ୍ତୁ ଆତ୍ମପ୍ରବଞ୍ଚନାର ଏ ନଶ୍ବର ପ୍ରୟାସ ପୁଣି ବ୍ୟର୍ଥ ହେଉଥିଲା । ତହିଁରେ ବନ୍ଧୁମାନଙ୍କର ଦୁଃଖର ବେଦନା ବୋଝ ଆହୁରି ଅଧିକ ଗୁରୁ ଭାର ହୋଇ ପଡ଼ୁଥିଲା । ବଞ୍ଚିରହିବାଟା ସୁଦ୍ଧା ଦିନକୁ ଦିନ ତାଙ୍କ ପକ୍ଷରେ ଏକ ପ୍ରାୟଶ୍ଚିତ୍ତ ବୋଲି ମନେହେବାକୁ ଲାଗିଲା । ତେଣୁ ୧୮୮୩ ଖ୍ରୀଷ୍ଟାବ୍ଦର ଅପ୍ରେଲ ୧୩ ତାରିଖ ବାର୍ତ୍ତିନା ଆତ୍ମହତ୍ୟା କରି ପୃଥିବୀର ଶୋକତାପରୁ ଛୁଟି ପାଇବାକୁ ଦୃଢ଼ ସଂକଳ୍ପ କରିଥିଲେ । ଦୁଇଥର ପିସ୍ତଲ ଲକ୍ଷ୍ୟ କରି ଗୁଳି କଲେ, କିନ୍ତୁ ଶିଥିଳ ମୁଷ୍ଟି ଦୁଇ ବାର ଲକ୍ଷ୍ୟଭ୍ରଷ୍ଟ ହେଲା; କିନ୍ତୁ ତୃତୀୟ ଥର ପିସ୍ତଲ ବଜ୍ରମୁଷ୍ଟିରେ ଚୁପି ତାର ଅଗ୍ନି ଉଦ୍‌ଗାରୀ ମୁହଁ ଗ୍ରୀବା ଉପରେ ରଖି ନିର୍ଦ୍ଦୟ ହାତରେ ଟିପି ଦେଲେ । ଗୋଟାଏ ବିକଟ ଶବ୍ଦରେ ଧୂଆଁ ଉଠି ଘରଟା ଥରକ ପାଇଁ କମ୍ପି ଉଠିଲା । ଆହତ ବାର୍ତ୍ତିନା ଦୁଇଘଣ୍ଟା ଅସହ୍ୟ ଯନ୍ତ୍ରଣା ସହି ନୀରବରେ ଆସନ୍ନ ମରଣ ସହିତ ଯୁଦ୍ଧ କଲେ । ତେବେ ସୁଦ୍ଧା ତାଙ୍କ ମୁହଁରେ କ୍ଲିଷ୍ଟ ପ୍ରାଣର ଆର୍ତ୍ତରବ ଶୁଣାଯାଇ ନ ଥିଲା । ରାତି ନ'ଟା ବେଳେ ଗୃହସ୍ବାମିନୀ ଏ ଘଟଣା ଦେଖି ଡାକ୍ତରଖାନାକୁ ପଠାଇ ଦେଲେ । ଡାକ୍ତରଖାନାରେ ଏହି ଜୀବନ୍ମୃତ ଅବସ୍ଥାରେ ସେ ବାର ଦିନ ବଞ୍ଚିଥିଲେ । ନୀରବରେ ମୃତ୍ୟୁ ସାମନାରେ ଛିଡ଼ା ହୋଇ ସେ ଥରେ ମାତ୍ର ହତାଶ ହୃଦୟର ବେଦନା ବ୍ୟକ୍ତ କରି ନ ଥିଲେ; ବରଂ ସ୍ଥିର ଅବିଚଳିତ ଭାବରେ ସମସ୍ତ ଶାରୀରିକ ଦୁଃଖ ବହନ କରିଥିଲେ । ୨୬ ତାରିଖ ଅପ୍ରେଲ ରାତି ୧୦ଟା ବେଳେ ଶାନ୍ତିନାରୀ ବାର୍ତ୍ତିନା ପରମ ତୃପ୍ତି ଓ ଆନନ୍ଦରେ ଏ ଇହ ସଂସାରରୁ ଚିରବିଦାୟ ନେଲେ ।

———

# ହାକାଲପ୍ସିଜ୍

ଯେଉଁଦିନ ରୁମାନିଆର ଏକ ସମ୍ଭ୍ରାନ୍ତ କୁଳରେ ଏହି ମହୀୟସୀ ରମଣୀ ଜନ୍ମିଥିଲେ, ସେଦିନ ହୁଏତ କେତେ ମଙ୍ଗଳ ଶଙ୍ଖ ବାଜିଥିବ, କେତେ ହର୍ଷମୁଖର କୋଳାହଳ ରବ ଉଠିଥିବ, କିନ୍ତୁ କେତେଜଣଙ୍କ କାନରେ ସେ କଥା ଯାଇ ପହଞ୍ଚିଲା ? ଅଭ ତାର ପଚାଶବର୍ଷ ପରେ କ୍ଲୁଶେଲବର୍ଗ ଜେଲରେ ଯେତେବେଳେ ତାଙ୍କର ଜୀବନ ଆହୁତି ଦିଆ ହୋଇଥିଲା, ସେତେବେଳେ ତରୁଣ ରୁମାନିଆ ଅନ୍ତରରେ ଯେ ମର୍ମଦାହୀ ହାହାକାର କ୍ରନ୍ଦନ ଉଦ୍‌ବେଳିତ ହୋଇ ଉଠିଥିଲା, ତାର ସ୍ପର୍ଶ ଯାଇ ବାଜିଲା ବିଶ୍ୱର ଦରଦୀ ହୃଦୟରେ ।

୧୯୦୪ ଖ୍ରୀଷ୍ଟାବ୍ଦରେ ହାଜା ଜନ୍ମଲାଭ କରିଥିଲେ । ସେତେବେଳେ ସେ ଭଜମାଗନ୍ଧାର ଏକ କଳିକା ପରି ପ୍ରକାଶ ବେଦନାରେ ଉଜ୍ଜ୍ୱଳ ଚଞ୍ଚଳ ଥିଲେ । ବସନ୍ତର ପିଠା ପବନ ଓ ଏକ ଅପୂର୍ବ ଗୀତର ଝରଣାପରି ରୂପ ହୋଇ ଦିନେ ହେଲେ ସେ ରହିପାରୁ ନ ଥିଲେ । ତାଙ୍କର ସ୍ପର୍ଶରେ ରୁମାନିଆର କ୍ଷୁଦ୍ର ଗ୍ରାମଟି ସୁଖୋଲ୍ଲାସରେ ଭରି ଉଠୁଥାଏ; କିନ୍ତୁ ସେଦିନ କିଏ ଭାବିଥିଲା, ନିଖିଳ ଜାତିର ଦୁଃଖ ବେଦନା ବୁକୁରେ ବାନ୍ଧି ଏହି କୋମଳ କଳିଟି ଝଡ଼ି ପଡ଼ିବ ? ତିଳ ତିଳ ହୋଇ ଶୁଖିଯିବ—ପାଷାଣ କାରାବକ୍ଷର ଅନ୍ଧକୂପରେ ପଡ଼ି ? ବଡ଼ଘର ଝିଅ, ଅଭାବ କିଛି ନ ଥିଲା । ଆମୋଦ ପ୍ରମୋଦରେ ଦିନ କଟୁଥିଲା । ଗ୍ରାମର ସହିତ ସେ ଯିବା ଆସିବା ସ୍କୁଲକୁ କରନ୍ତି ପ୍ରତ୍ୟହ କିନ୍ତୁ ଭଗବାନ୍ ତାଙ୍କୁ କେବଳ ଆମୋଦ ପ୍ରମୋଦରେ ମାତି ରହିଲା-ଭଳି ଉପାଦାନରେ ଗଢ଼ି ନ ଥିଲେ । ରାସ୍ତାକୁ ବାହାରିଲେ ଦେଖନ୍ତି କିଏ

ଗୃଳଛି ସୁନ୍ଦର ମନ୍ଦିରରେ, କିଏ ଗୃଳଛି ତାର ଶ୍ରମକ୍ଳାନ୍ତ ପାଦରେ । ସମସ୍ତଙ୍କ ପରିମ୍ଳାନ ମୁଖରେ ଶହ ଶହ ଶତାବ୍ଦୀର ଦୁଃଖ ଛପା ରହିଛି । ମନୁଷ୍ୟ ଭିତରେ ଏପରି ହଜାର ପ୍ରକାରର ବ୍ୟବଧାନ, ହଜାର ପ୍ରକାରର ଅନାଗ୍ରହ, ଅବଗ୍ରହ ତାଙ୍କର ଅନଭିଜ୍ଞ ଶିଶୁ ଅନ୍ତରକୁ ଆଶ୍ଚର୍ଯ୍ୟାନ୍ୱିତ କରି ଦେଉଥିଲା । ଅନ୍ତରରେ ପ୍ରଶ୍ନ ଉଠୁଥିଲା-କାହିଁକି ? କାହିଁକି ଏ ବ୍ୟବଧାନ ? କାହିଁକି ବିଧି-ନିଷେଧ ? କାହିଁକି ସମସ୍ତେ ସରସା ହୋଇ ଏକ ସଙ୍ଗରେ ପାଦ ପକାଇ ଚଳି ପାରୁନାହାନ୍ତି ? ସେମାନେ ଜୀବନଟାକୁ ହସଖେଳରେ ଫୁର୍ତ୍ତି କରି ଉଡ଼ାଇ ଦେବେ, ଆଉ ଯେଉଁମାନେ ଜଗତବାସୀ କୋଟି କୋଟି ନରନାରୀ ହୃତ୍ପିଣ୍ଡ ଛିଣ୍ଡେଇ ରକ୍ତ ଉଗାରି ଲୋଭୀଙ୍କ ପିପାସା ତୃପ୍ତ କରୁଅଛନ୍ତି, ସେମାନଙ୍କର କ'ଣ ମନୁଷ୍ୟତ୍ୱର ଅଧିକାରରେ ବଞ୍ଚିବାର ଅଧିକାର ନାହିଁ ?

କଲେଜରେ ପଢ଼ିଲା ସମୟରେ ଏହି ଆଜନ୍ମ ସାମ୍ୟବାଦୀ ଅନ୍ତର କ୍ରମଶଃ ଚରମପନ୍ଥୀ ହୋଇ ଉଠିବାକୁ ଲାଗିଲା । କମ୍ୟୁନିଜମ୍ ବା ସାମ୍ୟତନ୍ତ୍ରର ସ୍ରୋତଧାରାରେ ଅନ୍ୟ ସାଧାରଣ ଦଶଜଣଙ୍କ ପଥ-ଠାରୁ ବିଭିନ୍ନ ପଥରେ ବହୁଦୂର ଯାଏ ସେ ଭାସିଗଲେ । ସଂସାରର ତୁଚ୍ଛ ସୁଖଦୁଃଖ ଧରି ପଡ଼ି ରହିବାଟା ଯେପରି ତାଙ୍କ ପକ୍ଷରେ କଠିନ ହୋଇ ଉଠିଲା । ସେ ପରିପୂର୍ଣ୍ଣ ତୃପ୍ତି ସହିତ ଦୁର୍ଗମ ପଥ ଅନୁସରିବାକୁ ବାଛିନେଲେ—ତାଙ୍କର ଜୟଯାତ୍ରା ପାଇଁ ।

କମ୍ୟୁନିଷ୍ଟ ଦଳରେ ଯୋଗ ଦେଇ ସେ ଗଣସେବାରେ ଆତ୍ମନିୟୋଗ କଲେ । ସମସ୍ତ ଜୀବନୀ ଶକ୍ତି ଦେଇ ସେ ଲାଗିଲେ ଏ ବିଦ୍ରୋହରେ ଧନୀଙ୍କ ବିରୁଦ୍ଧରେ ଶ୍ରମିକର, ସବଳ ବିରୁଦ୍ଧରେ ଦୁର୍ବଳର ବିଦ୍ରୋହରେ, କିନ୍ତୁ ଅନ୍ତର ଥିଲା ତାଙ୍କର ବଡ଼ କୋମଳ । ସେ ଯେଉଁଠି ଥିଲେ, ସେଠାରେ ବ୍ୟଥା ବେଦନାର ପ୍ରବେଶ ନ ଥିଲା ।

ଲୁହ ଝରକୁ ସେ ହୃଦୟ ଖୋଲା ହସ-କଲ୍ଲୋଳରେ ଭସାଇ ଦେଉଥିଲେ । ବନ୍ଦୀ ବିପ୍ଳବୀମାନେ ଏଥିରେ ଆଶ୍ଚର୍ଯ୍ୟ ହୋଇ ଯାଉଥିଲେ । ସେମାନେ ଭାବୁଥିଲେ, ଯେଉଁମାନଙ୍କର ମଥା ଉପରେ ଉଦ୍ୟତ ଖଣ୍ଡା ଝୁଲୁଛି, ପଛରେ ଯାହାର କାଲମୃତ୍ୟୁ ତୀବ୍ର ଭାବରେ ଦୌଡ଼ୁଛି, ସେ କପରି ଏପରି ଆତ୍ମବିଭୋର ହସ ହସି ପାରେ ।

କ୍ଲେସେନବର୍ଗରେ ବିଚାରବେଳେ ମଧ୍ୟ ସେ ଏହି ଭାବର ବ୍ୟତିକ୍ରମ କରିବାକୁ ଦେଇ ନ ଥିଲେ । ବିଚାର ଆଡ଼କୁ ସେମାନଙ୍କର ମନଜ୍ଞାନ ନ ଥିଲା । ଅଦାଲତର ଜଜ୍ ଜୁରୀମାନଙ୍କ ସହିତ ସମାଲୋଚନାରେହିଁ ସେମାନେ ବିଭୋର ରହୁଥିଲେ । ଏହିପରି ଭାବରେ ପରିହାସ, ରସିକତା ଦ୍ୱାରା ସେମାନଙ୍କର ବିଚାରର ଦିନଗୁଡ଼ିକ କଟିଥିଲା ।

ରୁମାନିଆ ଗଭର୍ଣ୍ଣମେଣ୍ଟ ରାଜତନ୍ତ୍ର; ସୁତରାଂ କମ୍ୟୁନିଜମର ବିରୋଧୀ । ସେମାନେ ପ୍ରାଣପଣେ କମ୍ୟୁନିଜମ୍‌କୁ ଜବତ୍ ଓ ଉଚ୍ଛେଦ କରିବାକୁ ଲାଗିଲେ । ବାଧ୍ୟହୋଇ ହାନାଙ୍କୁ ଗୁପ୍ତ ସମିତି ପ୍ରତିଷ୍ଠା କରିବାକୁ ହେଲା । କାରଣ ସେ ଅନ୍ତରର ସହିତ ବିଶ୍ୱାସ କରୁଥିଲେ ଓ କହୁଥିଲେ—'ସ୍ୱାଧୀନତା ପାଇଁ ମୁକ୍ତିକାମୀ ଜାତି ଯେ ପଥରେ ଯାହା ଇଚ୍ଛା କରନ୍ତୁ ନା କାହିଁକି, ଏହା ଭଗବାନଙ୍କର ଅଦାଲତରେ ଏକମାତ୍ର ଆଇନସଙ୍ଗତ, ଧର୍ମସଙ୍ଗତ ଓ ନୀତିସମ୍ମତ କାର୍ଯ୍ୟ । ସ୍ୱାଧୀନତା ଲାଭ ପାଇଁ ଶକ୍ତି ଆହରଣ କରିବା ନିମନ୍ତେ ହୁଏ ତ ଅନେକ ସମୟ ତାଙ୍କୁ ଗୋପନ ପଥର ଆୟୋଜନ କରିବାକୁ ହେବ, ଗୋପନରେ ଆଘାତ କରିବାପାଇଁ ଅଗ୍ରସର ହେବାକୁ ହେବ, କିନ୍ତୁ ସେତେବେଳେ ମଧ୍ୟ ତାଙ୍କୁ ଅନ୍ତରରେ ଏହି ଦୃଢ଼ ବିଶ୍ୱାସ ଓ ପ୍ରତିଜ୍ଞା ନେଇ ଚଳିବାକୁ ହେବ ଯେ ଏକମାତ୍ର ନୀତି ଓ ଧର୍ମସଙ୍ଗତ କାର୍ଯ୍ୟ ସେ କରୁଛନ୍ତି !

ପଶୁବଳରେ ବଳୀ ବିଦେଶୀ ଦ୍ୱାରା ଯେପରି ତାଙ୍କର ଶକ୍ତି ଆହରଣରେ ବାଧା ନ ପଡ଼େ ବା ଅକାରଣେ ଅଧିକ ଶକ୍ତି କ୍ଷୟ ନ ହୁଏ, ଏଥିପାଇଁ କେବଳ ସେମାନେ ଗୋପନ ପଥର ଆଶ୍ରୟ ନେଉଥିଲେ—ସେମାନେ ଯାହା କରୁଛନ୍ତି, ତାହା ଅନ୍ୟାୟ ବୋଲି ନୁହେଁ ।" ଏହା ଥିଲା ସେମାନଙ୍କର ଗୁପ୍ତ ସମିତି ପ୍ରତିଷ୍ଠାର ନଜିର ।

ସହସ୍ର ବାଧା ବିପତ୍ତି ଓ ବିପଦ ଭିତରେ ଗୁଳୁଁ ଗୁଳୁଁ ତାଙ୍କର ବୈପ୍ଳବିକ ସମିତିକୁ ତିନିବର୍ଷ ବୟସ ହେଲା । ହାଜା ଥିଲେ ଏ ବିପ୍ଳବୀ ଦଳଙ୍କର ନେତା—ତାଙ୍କର ପ୍ରାଣ-ପ୍ରତିଷ୍ଠାତା ସେତେବେଳେ ତାଙ୍କର ବୟସ ଏକୋଇଶ ବର୍ଷ ।

ଏ ତିନିବର୍ଷରେ ତାଙ୍କର ତରୁଣ ଜୀବନ ଉପର ଦେଇ କେତେ ବଡ଼ ଝଡ଼ ତୋଫାନ, ଝଞ୍ଜାପବନ ବହିଗଲା, କିନ୍ତୁ ତାଙ୍କର ବିପ୍ଳବୀ ମନ ଉପରେ ତିଳେ ମାତ୍ର ଚିହ୍ନ ରହିନାହିଁ ।

ସବୁ ଦେଶରେ ଯେଉଁମାନେ ବିପ୍ଳବର ଦୁର୍ଗମ ପଥକୁ ସେମାନଙ୍କର ଜୀବନମରଣର ସଙ୍ଗୀ କରି ନଅନ୍ତି—ସେମାନଙ୍କ ନିକଟରେ ଅତ୍ୟାଚାର, ନିପୀଡ଼ନ ଆକସ୍ମିକ ହେଲେହେଁ କଦାପି ଅପ୍ରତ୍ୟାଶିତ ନୁହେଁ ।

୧୯୨୮ ସାଲ ସେପ୍‌ଟେମ୍ବରରେ ରୁମାନିଆର ପ୍ରାୟ ସତୁରି ଜଣ ଯୁବକ ଯୁବତୀ କମ୍ୟୁନିଷ୍ଟ ଷଡ଼ଯନ୍ତ୍ର ଅଭିଯୋଗରେ ଅଭିଯୁକ୍ତ ହେଲେ । ବିପ୍ଳବୀ ନେତା ହାଜା ଲିପ୍‌ସିକ୍‌ ସେମାନଙ୍କ ମଧ୍ୟରୁ ଜଣେ ।

ରୁମାନିଆର ସ୍ୱତନ୍ତ୍ର କୋର୍ଟ (Special Court) ବିଚାରରେ ସେମାନଙ୍କ ମଧ୍ୟରୁ ବାର ଜଣ ବିପ୍ଳବୀଙ୍କୁ ଗୁପ୍ତ ଷଡ଼ଯନ୍ତ୍ର କରିବା ଅପରାଧରେ କଠୋର ଶାସ୍ତିର ବ୍ୟବସ୍ଥା ହେଲା । ସାଧାରଣ ଚୋର, ଡକାୟତ, ଖୁନୀ ଲୋକଙ୍କ ପାଇଁ କଇଦୀରେ ସବୁ ବ୍ୟବସ୍ଥା ଅଛି ।

ସେମାନେ ଯେଉଁ ବ୍ୟବହାର ପାଆନ୍ତି, ଏ ହତଭାଗ୍ୟ ରାଜଦ୍ରୋହୀ ବନ୍ଦୀମାନେ ତାହାଁରୁ ସୁଦ୍ଧା ବଞ୍ଚିତ ହୋଇଥିଲେ । ଶତ ଅତ୍ୟାଚାର, ଉତ୍ପୀଡ଼ନ ଯେଉଁମାନଙ୍କୁ ଟଳାଇ ପାରି ନ ଥିଲା, ସେମାନେ ଏ ମନୁଷ୍ୟତ୍ୱର ଅପମାନରେ ରୁଦ୍ଧ ଆକ୍ରୋଶରେ ଗର୍ଜି ଉଠିଲେ । ମନୁଷ୍ୟଙ୍କ ଭିତରୁ ମନୁଷ୍ୟର ପୂର୍ଣ୍ଣ ଅଧିକାରକୁ ଝିଙ୍କି ଆଣିବାକୁ ଯେଉଁମାନେ ବିପ୍ଳବର ରଥ ଚକ୍ର ତଳେ ଜୀବନ ବଳି ଦେଇଛନ୍ତି, ସେମାନେ ଏହି ଅପମାନ ସହିବେ କାହିଁକି ?

ପ୍ରତିବାଦରେ ସେମାନେ ଉପବାସ ବ୍ରତ ଗ୍ରହଣ କଲେ । ତେବେ ସୁଦ୍ଧା ସରକାରର ପଥର ହୃଦୟରୁ ଏହି ସବହରାମାନଙ୍କ ଲାଗି କୌଣସି ଭାବାନ୍ତର ଜାଗିଲା ନାହିଁ ।

କିନ୍ତୁ କ୍ରମେ କ୍ରମେ ଶ୍ରମିକ ଦଳ ଓ ଜନସାଧାରଣ କ୍ଷିପ୍ର ହୋଇ ଉଠିଲେ । ପାଖଆଖ ଦେଶଗୁଡ଼ିକ ଏ ନିର୍ମ୍ମମତାର ପ୍ରତିବାଦ କରିଥିଲେ । ସେତେବେଳେ ସରକାର କ୍ଷୁବ୍ଧ ଦେଶବାସୀଙ୍କୁ ଶାନ୍ତ କରିବା ପାଇଁ ବୟାଳିଶ ଦିନ ଅନଶନ ପରେ ସେମାନଙ୍କୁ ମୁକ୍ତି ଦେଲେ କିନ୍ତୁ ହାଜା ଲିପ୍‌ସିଜ୍‌ଙ୍କର ଜୀବନୀ ଶକ୍ତି ସେତେବେଳକୁ ବରାବର ନିଃଶେଷ ହୋଇ ଯାଇଥିଲା ।

ଡାକ୍ତରମାନଙ୍କର ଶତ ଚେଷ୍ଟାରେ ସେ ଜୀବନୀ ଶକ୍ତି ଫେରି ଆସିଲା ନାହିଁ—ଉଜ୍ଜ୍ୱଳ ଦୀପ ଲିଭିଗଲା ।



# କଳ୍ପନା ଦତ୍ତ

ଆମେ ରାଣୀ ଦୁର୍ଗାବତୀ, ଲକ୍ଷ୍ମୀବାଈଙ୍କର ବୀରତ୍ୱ ଶୁଣିଛୁ । ଇଉରୋପର ଜୋଆନ-ଅଫ୍-ଆର୍କଙ୍କ କଥା ମଧ୍ୟ ଆମକୁ ଅଛପା ନୁହେଁ । କିନ୍ତୁ ଏ ସବୁ ଇତିହାସର କଥା ହୋଇଗଲାଣି । ଆମ ପଡ଼ଶା ବଙ୍ଗଳା ଦେଶମଧ୍ୟରେ ଚଟ୍ଟଗ୍ରାମର ସେହି ବୀର ତରୁଣୀଙ୍କ ସମ୍ବନ୍ଧରେ ଭାବିଲେ ଆଶ୍ଚର୍ଯ୍ୟ ହେବାକୁ ପଡ଼େ । ସେ କି ଆଧୁନିକ ହାତହତିଆରରେ ସୁସଜ୍ଜିତ ସେନାଙ୍କ ସଙ୍ଗେ ଥରେ ନୁହେଁ, ତିନି ତିନି ଥର ସମ୍ମୁଖୀନ ହୋଇଛନ୍ତି । ବର୍ଷାଚୋପା ପରି ଗୁଳିବର୍ଷଣ ଭିତରେ ସେ ତୋଫାନ ଭଳି ଦୌଡ଼ି ପଳାଇଯାଇଛନ୍ତି । ଭୟ କଣ—ଏ ତରୁଣୀ ଜାଣି ନାହାନ୍ତି । ତାଙ୍କ ହୃଦୟରେ କେବଳ ଦେଶଭକ୍ତି, ଦେଶୋଦ୍ଧାର ଏବଂ ଆତ୍ମଦାନ ଭାବନା ଛଡ଼ା ଆଉ କିଛି ନ ଥିଲା । ଭଗବାନ୍ ତାଙ୍କୁ ଯେପରି ମହାନ୍ ହୃଦୟ ଦେଇଥିଲେ ସେହିପରି ତୀକ୍ଷ୍ଣ ପ୍ରତିଭା ମଧ୍ୟ ତାଙ୍କର ଥିଲା ।

ଚଉଦ ବର୍ଷ ବୟସରେ ବୃତ୍ତି ପାଇ କଳ୍ପନା ମାଟ୍ରିକ୍ୟୁଲେସନ ପାଶ କରିଥିଲେ । ଗଣିତଶାସ୍ତ୍ର ତାଙ୍କୁ ସରସ ଉପନ୍ୟାସ ପରି ପ୍ରିୟ ବୋଧ ହେଉଥିଲା । ସବୁ ରକମର ବାଧା ଥାଇ ଜେଲର ଅନ୍ଧକୂପ ଭିତରେ ସଡ଼ି ସଡ଼ି ତାଙ୍କୁ ତାଙ୍କର ଶିକ୍ଷା ସମାପନ କରିବାକୁ ପଡ଼ିଥିଲା । ତାଙ୍କର ସ୍ୱଭାବ ମଧ୍ୟ ବଡ଼ ସରଳ ଓ ମଧୁର । ବଡ଼ବଡ଼ ଆଖିର ସ୍ନିଗ୍ଧ ପ୍ରଭା ଯେ କୌଣସି ମନୁଷ୍ୟ ଉପରେ ଅଧିକ ପ୍ରଭାବ ପକାଏ । ସେ ଅନୁଭବ କରୁଥିଲେ ଯେ ନାରୀ କେବଳ ଐନ୍ଦ୍ରିକ ଆକର୍ଷଣପାଇଁ ନୁହେଁ । ତାହାଠାରୁ ଉଚ୍ଚଦର ପ୍ରେମର ପାତ୍ର ହେବାକୁ ତାର କ୍ଷମତା

ମଧ୍ୟ ଅଛି । ତାଙ୍କର ସ୍ମିତହାସ୍ୟଭରା ମୁଖ ମନୁଷ୍ୟଙ୍କୁ ମୋହିତ କରେ । କିନ୍ତୁ ସେ ମୋହ ମନୁଷ୍ୟଙ୍କୁ ଉପରକୁ ନେଇଯାଏ, ତଳକୁ ନିଏ ନାହିଁ । ବୋଧହୁଏ ଏହି କାରଣରୁ ଏହି ଅଳ୍ପଭାଷିଣୀ ବାଳିକା ପୁରୁଷ ଏବଂ ସ୍ତ୍ରୀମାନଙ୍କ ମଧ୍ୟରେ ବିପ୍ଳବର ଅଗ୍ନି ଲଗାଇ ଦେବାରେ ସଫଳ ହୋଇଥିଲେ । ସେ ଅଳ୍ପଭାଷିଣୀ; କିନ୍ତୁ ଯେଉଁ କଥା କହନ୍ତି ତହିଁରେ ମନୁଷ୍ୟ ପ୍ରଭାବାନ୍ୱିତ ହୁଏ । ଯେତେବେଳେ ତାଙ୍କର ଜଣେ ବିପ୍ଳବୀ ସାଥି କହିଥିଲ—"ସ୍ତ୍ରୀମାନେ ବିପ୍ଳବ କେବେ କରି ପାରନ୍ତି ବୋଲି ଆମର ବିଶ୍ୱାସ ନାହିଁ, ସେମାନେ କେବଳ ସାହାଯ୍ୟ କରି ପାରନ୍ତି।" କଳ୍ପନା କହିଥିଲେ—"ଆଚ୍ଛା, ମୁଁ ପ୍ରମାଣ କରିଦେବି ।" ବୋଧହୁଏ ଏହି ଗୋଟିଏ କଥାର ହୃଦୟସ୍ପର୍ଶୀ ସ୍ୱରରେ ସାଥିଙ୍କର ବିଶ୍ୱାସ ହୋଇଯାଇଥିବ ।

ଏହି ବୀର ତରୁଣୀ ଚଟ୍ଟଗ୍ରାମର ପ୍ରସିଦ୍ଧ ବିଦ୍ରୋହ ଅଗ୍ନିର ଝାମ୍ପ-ଯାନୀ କଳ୍ପନା ଦତ୍ତ ବା କଳ୍ପନା ଯୋଗୀ । ଚଟ୍ଟଗ୍ରାମର କର୍ଣ୍ଣଫୁଲି ନଦୀତଟରେ ଶ୍ରୀପୁର ନାମକ ଗ୍ରାମରେ ରାୟ ବାହାଦୁର ଦୁର୍ଗାଦାସ ଦତ୍ତ ଜମିଦାରଙ୍କ ପୁତ୍ର ବିନୋଦବିହାରୀ ଦତ୍ତଙ୍କ କନ୍ୟା ହେଉଛନ୍ତି ଶ୍ରୀମତୀ କଳ୍ପନା ଦେବୀ । ତାଙ୍କ ଘରେ ସମସ୍ତେ ରାଜଭକ୍ତ ଥିଲେ । ପରିବାରଟି ପ୍ରତିକ୍ରିୟାଶୀଳ ଥିଲେ ଏବଂ ସରକାରଙ୍କୁ ଖୋସାମତ୍ କରୁଥିଲେ । ତାଙ୍କ ଘରେ ପ୍ରାଚୀନ ହିନ୍ଦୁ ପ୍ରଥା ପ୍ରଚଳିତ ଥିଲି ଏବଂ ସେମାନେ ଖୁବ୍ ଧନସମ୍ପଦଶାଳୀ ଥିଲେ । ତାଙ୍କର ମାତା ଖୁବ୍ ଧର୍ମଭୀରୁ ଏବଂ ଅନେକ ପ୍ରକାର ଶାସ୍ତ୍ର ଆଲୋଚନା କରୁଥିଲେ । ତାଙ୍କର ଆଈ ଅଜା କଳ୍ପନାଙ୍କୁ ଅତିଶୟ ଗେହ୍ଲବସର କରିଥିଲେ ଏବଂ ସେ ଅନେକ କାହାଣୀ ଓ ଭୂତ କଥା ଶୁଣିବାକୁ ଭଲ ପାଉଥିଲେ । ସେ ଭୂତପ୍ରେତଙ୍କୁ ଘୋର ଡରୁଥିଲେ । ସେଥିପାଇଁ ତାଙ୍କ ଆଈ ତାଙ୍କ ପାଖରେ ସବୁବେଳେ ଲୁହାଖଣ୍ଡେ

ରଖୁଥିଲେ । କଳ୍ପନା ପ୍ରତ୍ୟେକ ଦିନ ତାଙ୍କ ଘରେ ହେଉଥିବା ଭଜନ ଶୁଣୁଥିଲେ ଏବଂ ପ୍ରସାଦ ପାଉଥିଲେ । ତାଙ୍କ ଅଜା ରାୟବାହାଦୁର ଚଟ୍ଟଗ୍ରାମ ସହରରେ ବଡ଼ କୋଠା କରି ଡାକ୍ତରୀ ବ୍ୟବସାୟ କରୁଥିଲେ ଏବଂ ବର୍ଷକରେ ଥରେ ଗ୍ରାମର ଘରକୁ ଯାଉଥିଲେ । ତାଙ୍କର ପରିବାରଟି ଶିକ୍ଷିତ ଥିଲା ଏବଂ ନାରୀମାନେ ଶିକ୍ଷିତା ଥିଲେ । ତେଣୁ କଳ୍ପନା ଚାରି ବର୍ଷଦିନରୁ ଘରେ ପଢ଼ା ଆରମ୍ଭ କଲେ । ପାଞ୍ଚବର୍ଷରେ ଡାକ୍ତର ଖାସ୍ତଗିର ସ୍କୁଲରେ ଦ୍ୱିତୀୟ ଶ୍ରେଣୀରେ ପଢ଼ିଲେ । ସେହି ସ୍କୁଲ ତାଙ୍କର ଅଜା ପ୍ରତିଷ୍ଠା କରିଥିଲେ । ଶ୍ରେଷ୍ଠ ଶ୍ରେଷ୍ଠ ବହି ପଢ଼ିବା ଛଡ଼ା ବଡ଼ ବଡ଼ ଗ୍ରନ୍ଥକାରଙ୍କ ବହି ମଧ୍ୟ ସେ ପଢ଼ିବାକୁ ଲାଗିଲେ । ଏଗାର ବର୍ଷରେ କଳ୍ପନା ଶରତ୍‌ଚନ୍ଦ୍ରଙ୍କ 'ପଥେର ଦାବୀ' ବହି ପଢ଼ିଥିଲେ । ସେହି ବୟସରେ ମଧ୍ୟ କହ୍ନାଇ ଲାଲ ପ୍ରଭୃତି ସହିଦମାନଙ୍କର ଜୀବନୀ ପଢ଼ିପାରିଥିଲେ । ୧୯୨୪ ର କଂଗ୍ରେସର ଅସହଯୋଗ ଆନ୍ଦୋଳନରେ ତାଙ୍କର ଦୁଇଜଣ ଦାଦା ଯୋଗ ଦେଇଥିଲେ । ତାହାର ପ୍ରଭାବ କଳ୍ପନାଭଳି ଛଅ ସାତ ବର୍ଷର ଝିଅ ଉପରେ ନିଶ୍ଚୟ ପଡ଼ିଥିବ । ତାଙ୍କ ବୟସ ବଢ଼ିବା ସଙ୍ଗେ ସଙ୍ଗେ ଜ୍ଞାନର ପିପାସା ମଧ୍ୟ ବଢ଼ିବାକୁ ଲାଗିଲା । ସେ ଅଙ୍କରେ ଧୂରୀଣା ଥିଲେ ଏବଂ ବିଜ୍ଞାନରେ ତାଙ୍କର ପ୍ରଗାଢ଼ ପ୍ରେମ ଥିଲା । ଆଚାର୍ଯ୍ୟ ପ୍ରଫୁଲ୍ଲଚନ୍ଦ୍ର ରାୟଙ୍କୁ ସେ ନିଜର ଆଦର୍ଶ ବୋଲି ଗ୍ରହଣ କରିଥିଲେ । କାରଣ ସେ ନିଜେ ବୈଜ୍ଞାନିକ ହେବାକୁ ଚାହୁଁଥିଲେ । ୧୯୨୯ ରେ କଳ୍ପନା ବୃତ୍ତି ନେଇ ମାଟ୍ରିକୁଲେସନ ପାଶ କରିଥିଲେ । ସେତେବେଳେ ତାଙ୍କୁ ଚଉଦ ବର୍ଷ । ସଂସ୍କୃତ ତାଙ୍କର ଦ୍ୱିତୀୟ ଭାଷାଥିଲା । ସେ ପଢ଼ାରେ କେବଳ ସମସ୍ତ ସମୟ ନିୟୋଗ ନ କରି ଶାରୀରିକ ବ୍ୟାୟାମ ମଧ୍ୟ କରୁଥିଲେ । ଶ୍ରୀପୁରର ପୋଖରୀରେ ଡ଼ିଆଁ ଡେଇଁକରି

ସେ ପହଁରିବା ମଧ୍ୟ ଶିଖି ନେଇଥିଲେ । ଯଦିଓ ଦୁଇଜଣ ଆତ୍ମୀୟ ତାଙ୍କର ଅସହଯୋଗ କରିଥିଲେ, ତଥାପି ରାୟ ବାହାଦୁରଙ୍କ ପରାମର୍ଶ ଘରଭିତରେ ରହିଥିଲା । ତାଙ୍କ ଘରେ ସରକାରୀ ଅଫିସରମାନେ 'ଟି ପାର୍ଟି' ଦେଉଥିଲେ । ଚଟ୍ଟଗ୍ରାମରେ ତାଙ୍କ ଘରେ ଗୋଟିଏ ବଡ଼ ସ୍ୱଦେଶୀ ଲୁଗା ଦୋକାନ ଥିଲା । ଗାନ୍ଧିଜୀ ସେଠାକୁ ଯାଇଥିଲେ । ସେହି ସମୟରେ 'ବଙ୍ଗ-ଲକ୍ଷ୍ମୀ' ମିଲ୍‌ର ଲୁଗା ତାଙ୍କ ଦୋକାନରେ ରଖାଯାଇଥିଲା । ଗାନ୍ଧିଜୀଙ୍କ ଦର୍ଶନ ପାଇଁ ଦତ୍ତ ପରିବାର ସ୍ତ୍ରୀଲୋକ-ମାନଙ୍କ ଶାହାଣରେ ୬୮୭ ବର୍ଷର କଳ୍ପନା ଯାଇଥିଲେ । ସମସ୍ତେ ଗହଣା ପଇ ଦେଲେ । କଳ୍ପନା ମଧ୍ୟ ସୁନା କଙ୍କଣ ଦେଲେ । ମାତ୍ର ସେ ପିଲା ବୋଲି ଗାନ୍ଧିଜୀ ତାଙ୍କଠାରୁ ନେଲେ ନାହିଁ । ତାଙ୍କର ରାଜନୈତିକ ଦୁଇ ଦାଦା ବେଳେବେଳେ ତାଙ୍କୁ ଅସହଯୋଗ କଥା କହୁଥିଲେ । ଲୋକେ କହୁଥିଲେ, "ଦତ୍ତ ପରିବାର ଯେଉଁଦିନ ସ୍ୱଦେଶୀ ହେବେ ସାରାଦେଶ ସେଦିନ ସ୍ୱଦେଶୀ ହେବ ।" ତଥାପି ଦତ୍ତ ପରିବାରର ୩ୟ ପୁରୁଷରେ କଳ୍ପନାଙ୍କ ଭିତରେ ସ୍ୱଦେଶୀ ଭାବର ଅଙ୍କୁର ଜାତ ହୋଇଥିଲା । ତାଙ୍କର ମାଟ୍ରିକ ପରୀକ୍ଷା ପରେ ୧୯୩୮ ରେ ଚଟ୍ଟଗ୍ରାମରେ ଛାତ୍ର ସମ୍ମିଳନୀ ହୋଇଥିଲା । ତାଙ୍କର ଦାଦା କଳ୍ପନା ନିମନ୍ତେ ସେହି ସମିତିରେ କହିବାକୁ ଏକ ଲିଖିତ ଭାଷଣ ଦେଇଥିଲେ । କଳ୍ପନା ତାହା ସମିତିରେ ପାଠ କରିଥିଲେ ଏବଂ ଯୁକ୍ତି ତର୍କରେ ଭାଗ ନେଇଥିଲେ । ପରୀକ୍ଷା ଦେଲା ପରେ ସେ କୁଠୀରେ ବହୁତ ବହି ପଢ଼ିଥିଲେ । ସେହି ସମୟରେ ଚଟ୍ଟଗ୍ରାମରେ ବିପ୍ଳବ ବାଦୀ ସଂଘ ତିଆରି ହୋଇ ସାରିଥିଲା । ସୂର୍ଯ୍ୟ-ସେନ, ଅନନ୍ତ ସିଂହ, ଗଣେଶ ଘୋଷ ପ୍ରଭୃତି ତରୁଣମାନେ ସେହି ସଂଗଠନକୁ ଚଳାଉଥିଲେ । ସେହି ଦଳର ଯୁବକ ପୂର୍ଣ୍ଣେନ୍ଦୁ ଦସ୍ତିଦାରଙ୍କର କଳ୍ପନାଙ୍କ ଘରକୁ ଯିବା ଆସିବା ଥିଲା । ଦସ୍ତିଦାର

କଳ୍ପନାର ରୁଚି ପରିବର୍ତ୍ତନ କରି ନେଇଥିଲେ ଏବଂ ତାଙ୍କୁ ବିପ୍ଳବାତ୍ମକ ବହି ପଢ଼ିବାକୁ ଯୋଗାଉଥିଲେ ।

କଳ୍ପନାଙ୍କର କଲିକତାରେ ବିଜ୍ଞାନ ପଢ଼ିବାର ଥିଲା । କାରଣ ଚଟ୍ଟଗ୍ରାମ କଲେଜରେ କେବଳ ବାଳକମାନଙ୍କ ପାଇଁ ବିଜ୍ଞାନ ପଢ଼ିବାର ବନ୍ଦୋବସ୍ତ ଥିଲା । ତେଣୁ କଲିକତାରେ ରହି ବେଥୁନ କଲେଜରେ ପଢ଼ିବା ନିମନ୍ତେ ତାଙ୍କପାଇଁ ଆୟୋଜନ ହେଲା । ଭୌତିକ ବାଦ (Physics), ଗଣିତ (Mathematics) ଏବଂ ବନସ୍ପତିଶାସ୍ତ୍ର (Botany) ପାଠ ବିଷୟ ଥିଲା । ଚଟ୍ଟଗ୍ରାମର ଛାତ୍ର ସମ୍ମିଳନୀରେ ଯେତେବେଳେ ସେ ଯୋଗ ଦେଇଥିଲେ ସେତେବେଳେ କଲିକତାରେ ବା କପରି ତାହା ନ ହୁଅନ୍ତା ? କଲିକତାର ଛାତ୍ରସଙ୍ଘରେ ମଧ୍ୟ ସେ ଯୋଗଦେଲେ । ବିପ୍ଳବବାଦର ଜୀବାଣୁ ତାଙ୍କ ମସ୍ତିଷ୍କରେ ପ୍ରବିଷ୍ଟ ହୋଇସାରିଥିଲା । ଦେହକୁ ଲଘୁ ଓ ଫୁଲ ଭଳି ନ କଲେ କାମ ଚଳିପାରିବ ନାହିଁ ବୋଲି ସେ ସିମଲା ବ୍ୟାୟାମ ସମିତି ଏବଂ ନୌକା କ୍ଲବରେ ମଧ୍ୟ ସଭ୍ୟା ହୋଇଥିଲେ । କଲେଜର ବାହାର ପାଠ୍ୟକ୍ରମ ମଧ୍ୟରୁ ସେ ହିନ୍ଦୀ ଓ ଫ୍ରେଞ୍ଚ ଶିକ୍ଷା କରିଥିଲେ । ହଷ୍ଟେଲରେ ଛାତ୍ରୀମାନଙ୍କ ସଙ୍ଗେ ବାପ ମା ଓ ଅନ୍ୟାନ୍ୟ ବନ୍ଧୁବର୍ଗ ଦେଖା କରି ପାରିବେ ବୋଲି ସେମାନଙ୍କର ନାମ ଗୋଟିଏ ତାଲିକାରେ ଲେଖା ଥାଏ । କଳ୍ପନାଙ୍କର ବାପ ମାଙ୍କ ନାମ ସଙ୍ଗେ ଦସ୍ତିଦାରଙ୍କ ନାମ ମଧ୍ୟ ଥିଲା । ଏହି ପ୍ରକାରେ କଳ୍ପନାଙ୍କୁ ଦସ୍ତିଦାରଙ୍କଠାରୁ ସୂର୍ଯ୍ୟସେନ, ଅନନ୍ତ ସିଂହ ପ୍ରଭୃତି ବିପ୍ଳବବାଦୀମାନଙ୍କ ବିଷୟରେ ଜାଣିବାକୁ ଏବଂ ବିପ୍ଳବାତ୍ମକ ସାହିତ୍ୟ ପଢ଼ିବାକୁ ସୁଯୋଗ ମିଳୁଥିଲା । ଦସ୍ତିଦାର ସେତେବେଳେ ଶିବପୁର କଲେଜରେ ପଢ଼ୁଥିଲେ । ସୂର୍ଯ୍ୟସେନ, ଅନନ୍ତ ସିଂହ ଏବଂ ଗଣେଶ ଘୋଷଙ୍କ ସାହସିକ ଜୀବନ ଓ ପ୍ରତିଜ୍ଞା

ସମ୍ବନ୍ଧରେ ଦସ୍ତିଦାରଙ୍କ ଠାରୁ ଶୁଣି କଳ୍ପନାଙ୍କ ହୃଦୟରେ ଏହି ନେତାମାନଙ୍କ ପ୍ରତି ଶ୍ରଦ୍ଧା ବଢ଼ୁଥିଲା । ସେ ବିପ୍ଳବପନ୍ଥୀ ବୀରମାନଙ୍କର ଜୀବନୀ ଖୋଜି ଖୋଜି ପଢ଼ୁଥିଲେ । ଭଗତ ସିଂହଙ୍କ ଜୀବନୀ ମଧ୍ୟ ସେ ଶୁଣିଥିଲେ । କେତେ ଯେ ବେ-ଆଇନ ରାଜ-ବିଦ୍ରୋହାତ୍ମକ ସାହିତ୍ୟ କଳ୍ପନା ଏବଂ ବିଳ୍ପବବାଦୀ ଯୁବକମାନଙ୍କ ନିକଟରେ ଯାଇ ପହଞ୍ଚୁ-ଥିଲି ତାର ସୀମା ନାହିଁ । ସେ ଶାକ୍ତ ଥିଲେ ଏବଂ କାଳୀପୂଜା କରୁଥିଲେ । ଗୀତା ଉପରେ ତାଙ୍କର ପ୍ରଗାଢ଼ ବିଶ୍ୱାସ ଥିଲା । ମୃତ୍ୟୁକୁ ସେ ଆଦୌ ଭୟ କରୁ ନଥିଲେ । ଗୀତାପଢ଼ି ସେ କହୁଥିଲେ ଯେ, ମରିବା ମାନେ ପୁରୁଣା ଲୁଗାକୁ ଛାଡ଼ିବା । ତାଙ୍କ ହୃଦୟରେ ଶାନ୍ତିର ସ୍ରୋତ ବହୁଥିଲା ଏବଂ ବିପ୍ଳବର ସ୍ରୋତ ଉଚ୍ଛୁଳି ପଡ଼ୁଥିଲା । ସେ ସିଧା ଯୁଦ୍ଧରେ ଭାଗ ନେବାକୁ ଆଗ୍ରହୀ ଥିଲେ । ସେ ବିପ୍ଳବ ଯୁଦ୍ଧରେ ଭାଗ ନେଇ ଦେଖାଇବାକୁ ଚାହୁଁଥିଲେ ଯେ ସ୍ତ୍ରୀ ମଧ୍ୟ ବୀରତ୍ୱରେ ପୁରୁଷଠାରୁ ପଛରେ ପଡ଼ି ନାହାନ୍ତି । ସେଥିପାଇଁ ସେ ସବୁବେଳେ ଶାରୀରିକ ବ୍ୟାୟାମ ଆଡ଼କୁ ଦୃଷ୍ଟି ଦେଉଥିଲେ । ଯୁଯୁତ୍ସୁ ମଧ୍ୟ ସେ ତତ୍ପରତାର ସହ ଶିଖୁଥିଲେ । ଛୁରୀ, ଲାଠି ଚଳାଇବାକୁ ସେ ଶିକ୍ଷା କରିଥିଲେ । ସାଇକେଲ ଚଳାଇବାରେ ଦକ୍ଷ ହେବା ନିମନ୍ତେ ମଧ୍ୟ ବହୁତ ଚେଷ୍ଟା କରିଥିଲେ । ୧୯୩୦ ରେ ଜହରଲାଲ ଗିରଫ ହେବା ପରେ ବେଥୁନ କଲେଜରେ ହରତାଳ କରିବା ପାଇଁ କଳ୍ପନା ବହୁତ କାମ କରିଥିଲେ । କଲେଜର ମହିଳା ପ୍ରିନ୍‌ସପାଲ ବିରକ୍ତ ହୋଇ ଛାତ୍ରୀମାନଙ୍କୁ ବହୁତ ଅପମାନିତ କରିଥିଲେ; ଶେଷରେ ଛାତ୍ରୀମାନେ ପରୀକ୍ଷା ନ ଦେବାକୁ ସଂକଳ୍ପ କରିବାରୁ ପ୍ରିନ୍‌ସପାଲ ମହାଶୟଙ୍କୁ କ୍ଷମା ଭିକ୍ଷା କରିବାକୁ ପଡ଼ିଥିଲା । ୧୯୩୧ ରେ ଚଟ୍ଟଗ୍ରାମରେ ଅସ୍ତ୍ରାଗାର ଉପରେ ବିପ୍ଳବୀମାନେ ଆକ୍ରମଣ କରିଥିଲେ । ଏ ଆକ୍ରମଣରେ ଆକ୍ରମଣକାରୀମାନେ

ନିଜର ସୈନିକତ୍ୱ ଏବଂ ଦୃଢ଼ ସଂଗଠନ ଏବଂ ମାରପେଞ୍ଚ କୃତିତ୍ୱ ସହ ପ୍ରମାଣିତ କରିଥିଲେ । ଏହା ଦେଖି ଶତ୍ରୁପକ୍ଷ ମଧ୍ୟ ଶଙ୍କି ଯାଇଥିଲେ । ଭବିଷ୍ୟତ ପାଇଁ ସେମାନେ ଆଉ ନିଶ୍ଚିନ୍ତ ହୋଇ ରହୁ ନ ଥିଲେ ।

ଏ ଅସ୍ତ୍ରାଗାର ଆକ୍ରମଣ ଯେତେଦିନ ବିତିଗଲେ ମଧ୍ୟ ଚିରସ୍ମରଣୀୟ ହୋଇ ରହିବ । ବେଥୁନ କଲେଜରେ ହରତାଳ ପରେ କଳ୍ପନା ଚଟ୍ଟଗ୍ରାମ ଯିବାକୁ ବସିଲେ । କିନ୍ତୁ ଚଟ୍ଟଗ୍ରାମରୁ ଅସ୍ତ୍ରାଗାର ଆକ୍ରମଣ ପରେ ସମସ୍ତ ରାସ୍ତା ବନ୍ଦ ହୋଇ ଯାଇଥିଲା । ବହୁତ ବିପ୍ଳବୀ ଧରା ପଡ଼ିଯାଇଥିଲେ । ଦସ୍ତିଦାର କଲେଜରୁ କେଉଁଆଡ଼େ ଚାଲାଇ ଯାଇଥିଲେ । ଅପ୍ରେଲ ଶେଷରେ ଯେତେବେଳେ କଳ୍ପନା ଚଟ୍ଟଗ୍ରାମ ଗଲେ, ସେତେବେଳେ ବିପ୍ଳବୀମାନଙ୍କ ସଙ୍ଗେ ସମ୍ବନ୍ଧ ରଖିବାକୁ ତାଙ୍କର ସୁବିଧା ନ ଥିଲା । କାରଣ ଚଟ୍ଟଗ୍ରାମରେ ସାନ୍ଧ୍ୟଆଇନ ଜାରି ହୋଇଥିଲା । କେତେ ଜଣ ଗିରଫଦାର ହେବା ପରେ ଚଟ୍ଟଗ୍ରାମରେ କାମ ବନ୍ଦ ହୋଇ ଯାଇଥାନ୍ତା ।

ସେଥିପାଇଁ କଳ୍ପନା ଚଟ୍ଟଗ୍ରାମ କଲେଜରେ ପଢ଼ିବାର ଚେଷ୍ଟା କଲେ । କଲକତାରେ ରହି ପଢ଼ିଲେ ଧର୍ମଘଟରେ ଯୋଗ ଦେବାକୁ ପଡ଼ିବ ଏବଂ ତାହା ଫଳରେ ସରକାରୀ ବୃତ୍ତି ବନ୍ଦ ହୋଇଯିବ ବୋଲି ସେ ବାପାଙ୍କ ନିକଟକୁ ଚିଠି ଲେଖିଲେ । ଚଟ୍ଟଗ୍ରାମରେ ଚେଷ୍ଟା କଲା ପରେ ୨।୪ ଜଣ ବିପ୍ଳବୀମାନଙ୍କ ସଙ୍ଗେ ତାଙ୍କର ସମ୍ବନ୍ଧ ସ୍ଥାପିତ ହୋଇଥିଲା । ଆଉ ସବୁ କାମ ମଧ୍ୟ ବଢ଼ିଯାଇଥିଲା । ବେଥୁନ କଲେଜ ବଦଳି ସାର୍ଟିଫିକେଟ ଦେବାକୁ ଇଚ୍ଛୁକ ନ ଥିଲା ଏବଂ ଚଟ୍ଟଗ୍ରାମ କଲେଜରେ ମଧ୍ୟ ଗୋଟିଏ ଛାତ୍ରୀ ପାଇଁ ବନ୍ଦୋବସ୍ତ କରିବାକୁ କେହି ପ୍ରସ୍ତୁତ ନ ଥିଲେ । ଏ ସମ୍ବନ୍ଧରେ

ଚିଠିପତ୍ର ଲେଖାରେ ମଧ୍ୟ ବହୁତ ସମୟ ନଷ୍ଟ ହୋଇଗଲା । ସୁତରାଂ ସେ ପରୀକ୍ଷା ଦେବାର ମତଲବ ଛାଡ଼ିବାକୁ ବାଧ୍ୟ ହେଲେ । କିନ୍ତୁ ଅନନ୍ତ ସିଂହ ପ୍ରଭୃତି ପରୀକ୍ଷା ଦେବା ଉପରେ ଭାରି ଜୋର ଦେଲେ । ବେଥୁନ କଲେଜରେ ହରତାଳ ହେବାରୁ କଳ୍ପନାଙ୍କ ବୃତ୍ତି ମଧ୍ୟ ବନ୍ଦ ହୋଇ ଯାଇଥିଲା । ଶେଷରେ ସେ ମଧ୍ୟମ ବିଜ୍ଞାନ ପରୀକ୍ଷା ଘରୋଇ ଭାବରେ ଦେବେ ବୋଲି ସ୍ଥିର କଲେ । ନଭେମ୍ବରରେ ଟେଷ୍ଟ ପରୀକ୍ଷା ହେଲା ଏବଂ ସେଥିରେ ତାଙ୍କର ଭଲ ଫଳ ହେଲା । ତତ୍ପରେ ସେ ଚଟ୍ଟଗ୍ରାମ ଚାଲି ଆସିଲେ । କାରଣ ସେହି କେନ୍ଦ୍ରରେ ତାଙ୍କର ଶେଷ ପରୀକ୍ଷା ଦେବାର ସ୍ଥିର ହୋଇଥିଲା । ଚଟ୍ଟଗ୍ରାମରେ ମହା ବିପ୍ଳବ କାଣ୍ଡ ପରେ ପୁଣି ବିପ୍ଳବ କାମରେ ଭାଗ ନେବାପାଇଁ କଳ୍ପନା ଏତେ ବ୍ୟଗ୍ର ହୋଇ ପଡ଼ିଥିଲେ ଯେ, ତାଙ୍କର କୌଣସି କାମରେ ମନ ଲାଗୁ ନ ଥିଲା । ସେ କେବଳ ଗୁପ୍ତ ଭାବରେ ବିପ୍ଳବ ପ୍ରଚାର କରୁଥିଲେ ଏବଂ ବିପ୍ଳବମୂଳକ ସାହିତ୍ୟ ପଢ଼ୁଥିଲେ । ମଝିରେ ମଝିରେ ପିସ୍ତଲ ଚଳାଇବାର ଅଭ୍ୟାସ ମଧ୍ୟ କରୁଥିଲେ । ତାଙ୍କ ସଙ୍ଗେ ମାଟ୍ରିକ ପାଶ କରିଥିବା ତାଙ୍କ ସହପାଠୀ ମିସ୍ ସୁରମା ଦତ୍ତ କମ୍ୟୁନିଷ୍ଟ ଥିଲେ । ପୁଞ୍ଜିବାଦ, ଭୌତିକବାଦ, ମଜୁରିଆମାନଙ୍କ କଥା ସେ କଳ୍ପନାକୁ କହୁଥିଲେ । କିନ୍ତୁ ବନ୍ଧୁ ହେଲେ ମଧ୍ୟ କଳ୍ପନା ତାଙ୍କଠାରୁ ଅଲଗା ରହୁଥିଲେ । ଅନନ୍ତ ସିଂହ ତାଙ୍କୁ କହୁଥିଲେ ଯେ ନିଜ ଆଦର୍ଶ ଏବଂ ଉଦ୍ଦେଶ୍ୟ ପାଇଁ ବାପ ମାଙ୍କୁ ଅକୁଣ୍ଠିତ ଚିତ୍ତରେ ମାରି ଦେବାକୁ ପ୍ରସ୍ତୁତ ଅଛ କି ନାହିଁ ।

କଳ୍ପନାଙ୍କ ଚରିତ୍ର କ୍ଷେତ୍ରରୁ ପୁରୁଣା ଧର୍ମଶାସ୍ତ୍ର ଲୋପ ହୋଇ ଯାଇଥିଲା । ବର୍ତ୍ତମାନ ସେ ଗୋଟିଏ ନୂଆ ଆଚାର ଶାସ୍ତ୍ରର ଅନୁରାଗିଣୀ ହୋଇଥିଲେ । ସେଥିପାଇଁ ଅନନ୍ତ ସିଂହଙ୍କୁ ଆଶଙ୍କିତ

ଶତ୍ରୁରେ ଉତ୍ତର ଦେଇଥିଲେ, "ମୁଁ ସବୁ କରିପାରେ।" ଚଟ୍ଟଗ୍ରାମର ବିପ୍ଳବୀମାନଙ୍କର ମକଦ୍ଦମା ଜେଲରେ ଚାଲୁଥିଲା। ସେମାନଙ୍କ ବିରୁଦ୍ଧରେ ଭୟଙ୍କର ଅଭିଯୋଗମାନ ଥିଲା। ସେମାନେ ଇଂରେଜ ସୈନିକମାନଙ୍କୁ ମାରିଥିଲେ। ବାହାରେ ବଞ୍ଚି ରହିଥିବା ବିପ୍ଳବୀମାନେ ଯେଉଁମାନଙ୍କ ମଧ୍ୟରେ କଳ୍ପନା ମଧ୍ୟ ଜଣେ ଥିଲେ, ଡିନାମାଇଟ୍‌ରେ ଜେଲ ଚୂନା କରିବାକୁ ସଂକଳ୍ପ କରିଥିଲେ ଏବଂ ସେଥିପାଇଁ ଜାହାଜ ଘାଟରେ ଗୋଟିଏ ଘରକୁ ପ୍ରୟୋଗଶାଳା କରିଥିଲେ।

୧୯୩୨ର ଫେବୃୟାରୀ ମାସ ଆସିଲା। Indian Republican Army ର ଅଧ୍ୟକ୍ଷ ମାଷ୍ଟର ସୂର୍ଯ୍ୟସେନ କଲିକତା ଯାଇ ଗୋଲା ବାରୁଦ ପ୍ରଭୃତି କିଣି ଆଣିବାକୁ ହୁକୁମ ଦେଲେ। କଳ୍ପନା ଘରୁ କଲିକତାରେ ଆଗି ପରୀକ୍ଷା କରିବା ବାହାନାରେ କଲିକତାକୁ ଚାଲିଗଲେ। ସାନ ଦିନ ପରେ ସମସ୍ତ ଜିନିଷପତ୍ର କିଣି ସେ ପୁଣି ଚଟ୍ଟଗ୍ରାମରେ ପହଞ୍ଚିଲେ। ତେବେ ଯାଇ ମାଷ୍ଟର ସୂର୍ଯ୍ୟସେନଙ୍କ ଏହି ୨୩ ବର୍ଷ ଝିଅ ପ୍ରତି ବିଶ୍ୱାସ ଏବଂ ଆସ୍ଥା ହେଲା। ତାଙ୍କୁ ବିପ୍ଳବ ଦଳଭୁକ୍ତ କରି ଦେବାକୁ ସେ ନିଷ୍ପତ୍ତି କଲେ। ସିମ୍ପସନ୍‌ଙ୍କୁ ହତ୍ୟା କରିବାକୁ ଦଳରେ ସ୍ଥିର ହୋଇଥିଲା। ରାମକୃଷ୍ଣ ବିଶ୍ୱାସଙ୍କୁ ଯେଉଁ ଦିନ ଫାଶୀ ହେବ, ସେଦିନ ଏକ ବଡ଼ କାମକରିବାକୁ ମଧ୍ୟ ସ୍ଥିର ହେଲା। ବିସ୍ଫୋରକମାନ ତିଆରି ହେଲା। କଳ୍ପନାଙ୍କର ପରୀକ୍ଷା ଦେବାର ସମୟ ଆସିଗଲା। ସେ କାମ ସମ୍ମୁଖରେ ପରୀକ୍ଷା ଦେବାକୁ ରାଜି ନ ଥିଲେ। କିନ୍ତୁ ଅନନ୍ତ ସିଂହ ତାଙ୍କୁ ପରୀକ୍ଷା ଦେବାକୁ ବାଧ୍ୟ କଲେ। କଳ୍ପନା ପରୀକ୍ଷା ଦେଲେ। ଜେଲ ପାଚେରୀ ଭିତରୁ ଡିନାମାଇଟ ଲଗାଇ ଦିଆଗଲା। ଫଟାଇବାପାଇଁ ଗୋଟିଏ ତାର ଜେଲରୁ ବହୁତ ଦୂରରେ ରଖାଗଲା। କୌଣସି ସିପାହୀ ସେ ତାର ଦେଖିପାରିଲା

ଏବଂ ଖୋଲା ହେବାରୁ ଡିନାମାଇଟ ବାହାରିଲା । ପାହାଡ଼ ଉପରେ ସରକାରୀ କଚେରି, ସେଠାରେ ମଧ୍ୟ ଡିନାମାଇଟ ଧରା ପଡ଼ିଲା । ବହୁତ ତରୁଣ ଗିରଫ ହେଲେ । ଦୀନେଶ ଏବଂ ରାମକୃଷ୍ଣଙ୍କ ଫାଶୀ ହୋଇଗଲା ଏବଂ କାର୍ଯ୍ୟ ମଧ୍ୟ ନିଷ୍ଫଳ ହୋଇଗଲା । ଅନନ୍ତ ସିଂହ, ଗଣେଶ ଘୋଷ, ଲୋକନାଥ ପ୍ରଭୃତି ଜେଲରେ ଫାଶୀର ହୁକୁମ ଶୁଣିବାକୁ ଅପେକ୍ଷା କରି ରହିଥିଲେ । ପରୀକ୍ଷାରେ ପାଶ ହୋଇଥିଲେ ମଧ୍ୟ କଳ୍ପନାଙ୍କର କି ଶାନ୍ତି ଆସିଥାନ୍ତା ? ତାଙ୍କର ସମସ୍ତ ବିପ୍ଳବର ଏକମାତ୍ର କାମନା ବିଫଳ ହେଲା ।

କଲେଜ ଖୋଲିବାର ତିନିମାସ ହୋଇଯାଇଥିଲା । ସେହି ସେପ୍‌ଟେମ୍ବରରେ କଳ୍ପନା ଚଟ୍ଟଗ୍ରାମ କଲେଜରେ B. Sc. ପଢ଼ିବାକୁ ଲାଗିରେ । ଶ୍ରୀପୁରରେ ପିସ୍ତଲ ଅଭ୍ୟାସ କରିବାର ସୁବିଧା ଥିଲା । ସେଥିପାଇଁ କଳ୍ପନା ଅନେକ ସମୟରେ ଶ୍ରୀପୁର ଚାଲି ଯାଉଥିଲେ । ଭୂତ ଭୟରେ କମ୍ପୁଥିବା କଳ୍ପନା ସାପ, ବିଛା ଭରି ରହିଥିବା କାନ୍ତାରରେ ଅନ୍ଧାର ଯାଇ ରାତିରେ ପିସ୍ତଲ ଚଳାଇବା ଶିଖିଥିଲେ । ସୂର୍ଯ୍ୟସେନ୍ ଧରା ପଡ଼ି ନ ଥିଲେ । ସେ ଚଟ୍ଟଗ୍ରାମ ଜେଲରେ ଲୁଚିକରି ନିଜର ବିଚ୍ଛିନ୍ନ ପଡ଼ିଥିବା ସୈନ୍ୟମାନଙ୍କୁ ସଂଗଠିତ କରିଥିଲେ ।

୧୯୩୦ ରେ ପୋଲିସ ଥରେ କଳ୍ପନା ଏବଂ ତାଙ୍କର ପିତାଙ୍କୁ ଡାକିଥିଲେ ଏବଂ କହିଲେ, "ବିପ୍ଳବୀ କଳ୍ପନା ବିପ୍ଳବ ବାଦୀମାନଙ୍କ ସଙ୍ଗେ ସମ୍ପର୍କରଖୁଛନ୍ତି ଏବଂ ସେ ମୁଚୁଲିକା ଲେଖିଦେଲେ ତାଙ୍କୁ ଖଲାସ କରି ଦିଆଯିବ ।" କଳ୍ପନାଙ୍କୁ କହିବାକୁ ହେଲା, "ମୁଁ ବେ-ଆଇନ ପୁସ୍ତକ ପଢ଼ିବି ନାହିଁ ଏବଂ ଉକ୍ତ ସମିତି ସଙ୍ଗେ ସମ୍ପର୍କ ରଖିବି ନାହିଁ ।"

କିନ୍ତୁ ସେ ସେହି କଥା କହିଥିଲେ ବୋଲି ଯେ ତାଙ୍କୁ ମାନି ଚଳିଲେ ତାହା ନୁହେଁ । ସେ ସେପ୍‌ଟେମ୍ବର ୧୭ତାରିଖରେ ପରଓ୍ୟାନା ପାଇଁ ତାଙ୍କର ଜଣେ ସାଥିଙ୍କ ସଙ୍ଗେ ଦେଖା କରିବାକୁ ପୁରୁଷ ବେଶରେ ପାହାଡ଼ ତଳି ଆଡ଼କୁ ଯାଉଥିଲେ । ପୋଲିସ ତାଙ୍କୁ ବାଟରେ ଧରି ଜେଲଖାନାକୁ ପଠାଇଦେଲେ । ସାତ ଦିନ ପରେ ୧୯ସେପ୍‌ଟେମ୍ବରରେ ଆତଙ୍କବାଦୀମାନେ ଦ୍ୱିତୀୟ ଥର ଅତିସାହସିକ କାମ କରିଥିଲେ । ସେମାନେ ପାହାଡ଼ ତଳେ ଇଉରୋପୀୟ କ୍ଲବ ଆକ୍ରମଣ କରି କେତେକ ଇଂରେଜଙ୍କୁ କ୍ଷତବିକ୍ଷତ କଲେ ଏବଂ ଜଣେ ମେମ୍‌କୁ ମାରି ପକାଇଲେ । ଏ ଲଢ଼ାଇରେ ପ୍ରୀତିଲତା ଓ୍ଵାଦେଦାର ବୋଲି ଜଣେ ନାରୀ ମଧ୍ୟ ସାମିଲ ଥିଲେ । ସେ ଧରାପଡ଼ିବେ ନାହିଁ ବୋଲି ପଟାସିୟମ୍ ସାଇନାଇଡ଼ ଖାଇ ଆତ୍ମହତ୍ୟା କଲେ । ପୋଲିସ-ମାନେ କଳ୍ପନାଙ୍କୁ ମଧ୍ୟ ଏହି ବ୍ୟାପାରରେ ଜଡ଼ିତ କରିବାକୁ ବସି-ଥିଲେ । କାରଣ ସାତ ଦିନ ପୂର୍ବେ ସେ ପୁରୁଷବେଶରେ ସେଠାରେ ଧରାପଡ଼ିଥିଲେ । ଅନେକେ ଗିରଫଦାର ହେଲେ । ମାତ୍ର ଉପଯୁକ୍ତ ସାକ୍ଷୀ ନ ମିଳିବାରୁ ସମସ୍ତେ ଖଲାସ ହେଲେ । କଳ୍ପନାଙ୍କୁ ଦୁଇମାସ ଜେଲରେ ରଖି ୧୦୯ ଦଫାରେ ସରକାର ମକଦ୍ଦମା ଚଳାଇଲେ । କଳ୍ପନା ଜାମିନ୍ ଦେଇ ଖଲାସ ପାଇଲେ । ଜାମିନ ଦେଲାବେଳେ କଳ୍ପନାଙ୍କୁ କୁହାହୋଇଥିଲା ଯେ, ସେ ଘରୁ ବାହାରି ପାରିବେ ନାହିଁ ଏବଂ ପରିବାରରେ ମଧ୍ୟ ତାଙ୍କୁ କୋଠାଉପରୁ ତଳକୁ ଆସିବାକୁ ଦେଉ ନ ଥିଲେ । ସେଥିପାଇଁ ସେ ତାଙ୍କର ଛ'ବର୍ଷର ଭଉଣୀଙ୍କୁ ସାଙ୍ଗ କରି ବିପ୍ଳବବାଦୀମାନଙ୍କ ସହ ପୁଣି ସମ୍ପର୍କ ରଖିଲେ ଏବଂ 'ମାଷ୍ଟର ଦା' ସୂର୍ଯ୍ୟସେନ ତାଙ୍କୁ ଘର ଛାଡ଼ି ଚାଲିଆସିବାକୁ କହିଲେ । ୧୯୩୨ ଡିସେମ୍ବର ୨୦ ତାରିଖ ଦିନ ଦତ୍ତ ପରିବାରରେ ରାୟବାହାଦୁର ଦୁର୍ଗାଦାସ ଦତ୍ତଙ୍କ ଶ୍ରାଦ୍ଧୋତ୍ସବ ହେଉଥିଲା । ସମସ୍ତେ ବ୍ରାହ୍ମଣ

ଭୋଜନ, କାଙ୍ଗାଳ ଭୋଜନ ପ୍ରଭୃତିରେ ବ୍ୟସ୍ତ ଥାନ୍ତି । ତାଙ୍କ କୋଠା ଉପରର ଗୋଟିଏ ଝରକାକୁ ଲଗି ଏକ ପାହାଡ଼ ଥାଏ । କଳ୍ପନା କପରି ସେହିବାଟେ ପଳାଇବେ, ତାହା ଭାବୁଥାନ୍ତି । ସେ ନିଜ ଶାଢ଼ୀକୁ ଅଣ୍ଟାରେ ଭିଡ଼ି ଝରକାବାଟେ ପାହାଡ଼ରେ ଚଢ଼ି ଅଦୃଶ୍ୟ ହୋଇଗଲେ । ପରିବାରରେ କେହି ଜାଣି ପାରିଲେ ନାହିଁ ।

ସେତେବେଳେ ଆଉଙ୍କ ବାପାମାନଙ୍କ ଦୁଇ ଦୁଇ ଥର ଆକ୍ରମଣ ହେବାରୁ ସୈନ୍ୟମାନେ କ୍ୟାମ୍ପକରି ଚଟ୍ଟଗ୍ରାମ ସହର ଏବଂ ଜିଲ୍ଲାକୁ ଘେରି ରହିଥାନ୍ତି । ପହିଲ ରାତି କଳ୍ପନା ସହରରେ ଜଣଙ୍କ ଘରେ ରହିଗଲେ । ଦ୍ୱିତୀୟ ରାତିରେ ସେ ବୋହୂବେଶ ଧରି ସୂର୍ଯ୍ୟ ସେନଙ୍କ ସହ ସହରର ୧୦ ମାଇଲ ଦୂରବର୍ତ୍ତୀ ଗୋଟିଏ ଗାଁକୁ ଚାଲି ଗଲେ । ପୋଲିସ କଳ୍ପନାଙ୍କ ପଳାୟନ ଖବର ଶୁଣି ଆଶ୍ଚର୍ଯ୍ୟ ହେଲେ । ସରକାର ଝିଅ ଦୋଷରୁ ତାଙ୍କ ପିତାଙ୍କ ଉପରେ ଦାଉ ସାଧିଲେ । ତାଙ୍କୁ ଚାକିରିରୁ ବରଖାସ୍ତ କରି ତାଙ୍କର ସମ୍ପତ୍ତିବାଡ଼ି ବାଜ୍ୟାପ୍ତ କରି ନେଲେ । ତାଙ୍କ ବାପାଙ୍କ ସମ୍ପତ୍ତି ଏବଂ ଚାକିରି ଚାଲି ଯିବା ପରେ ଝିଅଙ୍କୁ ପୁଲିସ ପାହାଡ଼, ବଣ, ଜଙ୍ଗଲରେ ଖୋଜୁଥିଲେ । ମାଷ୍ଟର ଦା (ସୂର୍ଯ୍ୟସେନ) କଳ୍ପନାଙ୍କୁ ଦୃଢ଼ କରି ଧରି ରଖିଥିଲେ । ରାତିରେ କଳ୍ପନା ତାଙ୍କ ସାଙ୍ଗେ ବୁଲୁଥିଲେ ଓ ଦିନରେ କୌଣସି ବିଶ୍ୱସ୍ତ ଲୋକ ଘରେ ରହୁଥିଲେ ଏବଂ ଭବିଷ୍ୟତ କାର୍ଯ୍ୟ ସମ୍ବନ୍ଧରେ ଚିନ୍ତା କରୁଥିଲେ । ତାହାର ମଧ୍ୟରେ ପିସ୍ତଲର ଗୁଳି ମଧ୍ୟ ତିଆରି କରୁଥିଲେ ।

୧୯୩୩ର ଜାନୁଆରି ପହିଲା । ଗାଁ ଗାଁରେ ସୈନିକ କ୍ୟାମ୍ପ ମୁତାଇନ ରହିଥିଲା । ପ୍ରତ୍ୟେକ ରାତିରେ ଗୋଟିଏ ଗୋଟିଏ ଗାଁରୁ କଳ୍ପନା ଏବଂ ସୂର୍ଯ୍ୟସେନ ସ୍ଥାନ ପରିବର୍ତ୍ତନ କରୁଥିଲେ ଏବଂ

ସକାଳକୁ ଅନ୍ୟ ଏକ ଗାଁରେ ଆଶ୍ରୟ ନେଉଥିଲେ । ଧନେ ସେମାନଙ୍କର ଭଲ ନିଦ ହୋଇ ନ ଥିଲା । ସେତେବେଳେ ପ୍ରାୟ ଶହେ ଜଣ ଗୁର୍ଖ ସୈନ୍ୟ ତାଙ୍କ ଘରର କବାଟରେ ଧକ୍କା ଦେବାକୁ ଲାଗିଲେ । ଶୀତଦିନରେ ଶେଯ ମାଠ ବିନା ଶୋଇବାର ଅଭ୍ୟାସ କଳ୍ପନାଙ୍କର ପୂର୍ବରୁ ଘରେ ହୋଇ ନ ଥିଲା । ଦରଜାରେ ଧକ୍କା ଲାଗିବାରୁ ସେ ଉଠି ପଡ଼ିଲେ ଏବଂ ବିପଦ ଆଶଙ୍କା କରି ସୂର୍ଯ୍ୟସେନଙ୍କୁ ଚଞ୍ଚଳ ଉଠାଇଦେଲେ । ଏହି ଦୁଇଜଣଙ୍କ ଛଡ଼ା ଅନ୍ୟ ତିନିଜଣ ଆତଙ୍କବାଦୀ ମଧ୍ୟ ସେହି ଘରେ ଲୁଚି ରହିଥିଲେ । ସେହି ମହାବିପଦ କାଳରେ କଳ୍ପନା ଏବଂ ତାଙ୍କର ସଙ୍ଗୀମାନେ ଚାରିଆଡ଼କୁ ଚାହିଁ ଦେଖିଲେ ଯେ ଘରର ଗୋଟାଏ ପାଖ ସୈନିକମାନେ ଘେରି ନାହାନ୍ତି । ତହୁଁ ସେମାନେ ସେହି ବାଟ ଦେଇ ସମସ୍ତଙ୍କ ଅଗୋଚରରେ ନିଷ୍କ୍ରାନ୍ତ ହେଲେ । ଏହା ପରେ କେତେଦିନ ଚାଲିଗଲା । କଳ୍ପନା ନିଜ ସାଥିମାନଙ୍କ ସଙ୍ଗେ ଜଣଙ୍କ ଘରେ ଆଶ୍ରୟ ନେଇଥିଲେ । ରାତି ନଅଟା ବାଜିଥିଲା । ସୂର୍ଯ୍ୟସେନ, କଳ୍ପନା, ଶାନ୍ତି ଚକ୍ରବର୍ତ୍ତୀ ଓ ଆଉ ତିନି ଜଣ ସାଥି ଘର ଭିତରେ ମନ୍ତ୍ରଣା କରୁଥିଲେ । ଗାଁରେ ଗୁର୍ଖାମାନଙ୍କର କ୍ୟାମ୍ପ ପଡ଼ିଥିଲା । ଯେତେବେଳେ ଜଣେ ସାଥୀ ବାହାରକୁ ଆସିଲା, ସେତେବେଳେ ସୈନିକ ଜଣେ ପ୍ରଶ୍ନ କଲା,—ତୁମ୍ଭେ କିଏ ? ସାଥିମାନେ ସମସ୍ତେ ପଛ ବଗିଚା ଆଡ଼କୁ ହଟିଗଲେ । ସୈନିକମାନେ ଗୁଳି ଚଳାଇଲେ । ଷ୍ଟେନ୍‌ଗନର ଗୁଳିରେ ଅନ୍ଧକାର ଛିନ୍ନଭିନ୍ନ ହୋଇଗଲା । ଗୋଟାଏ ଗୁର୍ଖା କଳ୍ପନାକୁ ଧରିବାକୁ ଚାହିଁଲା । ଏହି ସମୟରେ ଜଣେ ତରୁଣ ଆତଙ୍କବାଦୀ ପଛକୁ ହଟି ପୁଣି ଆଗକୁ ବଢ଼ିଗଲା । କଳ୍ପନା ଗୁଳିରୁ ବଞ୍ଚିବେ ବୋଲି ଆଗେ ପଡ଼ିଗଲେ ଏବଂ ପରେ ଉଠିପଡ଼ି ଖାଇରେ ଥିବା ପାଣିକୁ ଡେଇଁ ପଡ଼ିଲେ । ପୁଣି ବାଉଁଶବଣରୁ ସୈନ୍ୟମାନଙ୍କ ଗୁଳି ଚଳାଇବାକୁ ଲାଗିଲେ ।

ସେତେବେଳେ ତାଙ୍କ ମଗଜ ଥଣ୍ଡା ରହିଥିଲା । ମାତ୍ର ଦେହର ଶିରାରେ ଗରମ ରକ୍ତ ତେଜରେ ବହୁଥିଲା । ବହୁତ ଚତୁରତାର ସହ ସେ ଗୁଳି କରୁଥିଲେ ଏବଂ କୌଣସି ଗୁଳି ଯେପରି ବ୍ୟର୍ଥ ନ ହୁଏ ତାର ଚେଷ୍ଟା କରୁଥିଲେ । ଯେ ବାଉଁଶ ବଣକୁ ଯିବାକୁ ଚାହୁଁଥିଲା, ସେ କଳ୍ପନାଙ୍କ ଗୁଳିର ଶିକାର ହେଉଥିଲା । କଳ୍ପନା ନିଜେ ମଧ୍ୟ ଜାଣି ନ ଥିଲେ ସେ କେତେ ଲୋକଙ୍କୁ ମାରିଥିଲେ ବା ଆଘାତ କରିଥିଲେ । ଲୋକେ କହିଲେ ଯେ ସେହିଦିନ ସାତଜଣ ସୈନିକ କଳ୍ପନାଙ୍କ ଗୁଳିରେ ମରିଛନ୍ତି । ଏହି ସମୟରେ ସୈନିକମାନେ ଆକାଶରେ (Signalling fire) ଆଲୋକ ପ୍ରକାଶ ହେବାପାଇଁ ଗୁଳି କଲେ ଏବଂ ରାତିକୁ ଦିନ କରିଦେଲେ । ଆଖପାଖ ଗାଁରୁ ସୈନ୍ୟ-ମାନେ ଆସି ଜମା ହେବାକୁ ଲାଗିଲେ । ଏହା ଦେଖି କଳ୍ପନା ଏବଂ ଅନ୍ୟାନ୍ୟ ତରୁଣମାନେ ଘୋର ବିପଦର ସୂଚନା ବେଶ୍ ବୁଝି ପାରିଲେ ଏବଂ ମାଘ ମାସ ଶୀତରେ ସେ ଓ ଅନ୍ୟାନ୍ୟ ଆତଙ୍କବାଦୀ ତରୁଣମାନେ ଗୋଟିଏ ପୋଖରୀକୁ ଡେଇଁ ପଡ଼ିଲେ । ପୋଖରୀର ବନ୍ଧ ଥିବାରୁ ଗୁଳି ସବୁ ଉପରେ ଚାଲି ଯାଉଥିଲା । ଏମାନେ ଗଳା ପର୍ଯ୍ୟନ୍ତ ବୁଡ଼ି ରହିଥିବାରୁ କୌଣସି ଆଘାତ ହୋଇ ନ ଥିଲା । ରାତି ଚାରିଟା ବାଜିଲା । ସୂର୍ଯ୍ୟୋଦୟ ହେବାରୁ ବିପଦ ଘନେଇ ଆସିଲା । ସେମାନେ ସେତିକିବେଳେ ପୋଖରୀରୁ ଉଠି ଓଦା ଲୁଗାରେ ଏକ ଦିଗରେ ଦୌଡ଼ି ପଳାଇଲେ । ନିକଟରେ ଗାଁ ଥିବାରୁ ସେମାନେ ଏକ ନିଶ୍ୱାସରେ ତିନି ଚାରିମାଇଲ ଦୌଡ଼ିଲେ । ଦିନ ଆଠଟାବେଳେ ସେମାନେ ଗୋଟିଏ ଗାଁରେ ପହଞ୍ଚିଲେ । ସେଠାରେ ଜଣେ ଭଲ ପିଲା କଳ୍ପନାଙ୍କୁ ପୁରୁଷ ବେଶରେ ଧାନ କୋଠି ଭିତରେ ଲୁଚାଇ ରଖିଲା ଏବଂ ଅନ୍ୟ ଜଣେ ମଧ୍ୟ ଲୁଚି ରହିଲେ । ପିଲାର ବାପ ଧାନ ଅମାର ଭିତରେ ଦୁଇଜଣ ଆତଙ୍କବାଦୀଙ୍କୁ ଦେଖି ସେମାନଙ୍କୁ ଶୀଘ୍ର

ପଳାଇ ଯିବାକୁ କହିଲେ ଏବଂ ନ ଗଲେ ପୋଲିସକୁ ଧରାଇ ଦେବାକୁ ଭୟ ଦେଖାଇଲେ । ଗାଁର ଅନ୍ୟ କେତେକ ଲୋକ ମଧ୍ୟ ସୈନ୍ୟମାନଙ୍କ ପକ୍ଷରେ ଥାଆନ୍ତି । ଏମାନଙ୍କ ପାଖରେ ପିସ୍ତଲ ଥିବାରୁ ସେହି ଲୋକମାନେ ଭୟରେ ଆଉ କିଛି କହିଲେ ନାହିଁ । ତତ୍ପରେ ସେମାନେ ସଙ୍ଗେ ସଙ୍ଗେ ପଳାୟନ କଲେ । ତିରିଶ ମାଇଲ ଦୌଡ଼ି ଦୌଡ଼ି ସନ୍ଧ୍ୟାବେଳେ ଅନ୍ୟ ଏକ ଗାଁରେ ପହଞ୍ଚି ସେଠାରେ ଅନ୍ୟ ତିନିଜଣ ସାଥିଙ୍କୁ ଘାଇରେ ପଡ଼ି ଥିବାର ଦେଖିଲେ । ଶାନ୍ତି ଚକ୍ର-ବର୍ତ୍ତୀଙ୍କ ଗୋଡ଼ରେ ଗୁଳି ପଶି ଏପାଖ ସେପାଖ ଫୁଟି ଯାଇଛି, ଅନ୍ୟ ସାଥି ଗିରଫଦାର୍ ହେବାରେ ତାଙ୍କର କିଛି ଭୟ ନ ଥିଲା । ମାତ୍ର ସୂର୍ଯ୍ୟସେନ ଗିରଫଦାର୍ ହୋଇଥିବା ଶୁଣି ତାଙ୍କର ଆଖିରେ ଅନ୍ଧାର ଛାଇ ହୋଇଗଲା ।

କଳ୍ପନା ଗୋଟିଏ ଗାଁରୁ ଅନ୍ୟ ଗାଁକୁ ଦୌଡ଼ି ଦୌଡ଼ି ଯାଉଥାନ୍ତି । ମେ ୧୯ ତାରିଖ ହେଲା, ସେତେବେଳେ ସେମାନେ ସମୁଦ୍ର ତୀରବର୍ତ୍ତୀ ଗୋଟିଏ ଘରେ ଥିଲେ । ତିନିଜଣ ଆତଙ୍କବାଦୀ ଏବଂ ଘରବାଲାଙ୍କୁ ମିଶାଇ ଛଅଜଣ ଥିଲେ । ସୈନ୍ୟମାନେ ଖବର ପାଇ ପୁଣି ସେହି ଘରକୁ ଘେରାଉ କଲେ । ସୈନ୍ୟମାନେ ଦୂରରୁ ଗୁଳି ଚଳାଇବାକୁ ଲାଗିଲେ । ମାତ୍ର କଳ୍ପନା ଏବଂ ତାଙ୍କର ସାଥିମାନଙ୍କର ପିସ୍ତଲର ଗୁଳି ବେଶିଦୂର ଯାଇପାରୁ ନ ଥିଲା । ସୁତରାଂ କଳ୍ପନା ଓ ଅନ୍ୟାନ୍ୟ ଆତଙ୍କବାଦୀମାନେ ଜଙ୍ଗଲ ଭିତରେ ଲୁଚି ଲୁଚି ଗୁଳି ଚଳାଇବାକୁ ଲାଗିଲେ । ଷୋଳ ବରଷର ଜଣେ ତରୁଣ ଆତଙ୍କବାଦୀ ଅପର ପକ୍ଷର ଗୁଳିରେ କଳ୍ପନାଙ୍କ ସମ୍ମୁଖରେ ପ୍ରାଣତ୍ୟାଗ କଲେ । କଳ୍ପନାଙ୍କ ହାତରେ ମଧ୍ୟ ଗୁଳି ବାଜି ରକ୍ତ ବହୁଥିଲା । ଗୁଳି ମାଡ଼ରୁ ରକ୍ଷା ପାଇବାର ଆଶା ନ ଦେଖି ମଧ୍ୟ

ସେମାନେ ଆତ୍ମସମର୍ପଣ ପାଇଁ ପ୍ରସ୍ତୁତ ନ ଥିଲେ । ଘରବାଲମାନଙ୍କୁ ସୈନ୍ୟମାନେ ହତ୍ୟା କରିବାକୁ ଲାଗିଲେ । କଳ୍ପନା ଦେଖିଲେ, ସେମାନେ ଆତ୍ମସମର୍ପଣ ନ କଲେ ସୈନ୍ୟମାନେ ପରିବାରର ସମସ୍ତଙ୍କୁ ମାରି ପକାଇବେ । ତାଙ୍କର ଗୁଳି ମଧ୍ୟ ସରି ଯାଇଥିଲା । ଏପରି ଅବସ୍ଥାରେ ସେ ପାଟି କରି ଗୁଳି ବନ୍ଦ କରିବାକୁ କହିଲେ, ଏବଂ ସେ ଆତ୍ମସମର୍ପଣ କରିଛନ୍ତି ବୋଲି ମଧ୍ୟ କହିଲେ । ମାତ୍ର ସୈନ୍ୟମାନଙ୍କର ତଥାପି ମଧ୍ୟ ବିଶ୍ୱାସ ହେଲା ନାହିଁ । ପୁଣି ଥରେ କଳ୍ପନା ପାଟି କରି କହିବାରୁ ସୈନ୍ୟମାନେ ଦଫାଦାରଙ୍କୁ ପଠାଇ କଳ୍ପନା ଏବଂ ତାଙ୍କ ସାଥିମାନଙ୍କଠାରୁ ପିସ୍ତଲ ରଖିନେଲେ । ଦିନ ନଅଟା ବାଜିଥିଲା, ଦୁଇଘଣ୍ଟା ଲଢ଼ାଇ ପରେ ସୈନ୍ୟମାନେ ବୀର ବାଳିକାର ହାତ ବାନ୍ଧି ପକାଇ ଥିଲେ । ଜାଠ ସୁବାଦାର କଳ୍ପନାଙ୍କୁ ହଣ୍ଟରରେ ଗୋଟିଏ ଚାବୁକ ମାରିଲା । ଏଥିରେ ସିପାହୀମାନେ ମଧ୍ୟ ବିରକ୍ତ ହେଲେ ଏବଂ କହିଲେ, "ଆମ ପକ୍ଷରେ ଜଣେ ସ୍ତ୍ରୀ ବନ୍ଦୀକୁ ମାରିବା ବାହାଦୁରୀ ନୁହେଁ ।" ତା' ପରେ ତାଙ୍କର ଜଣେ ସାଥିଙ୍କୁ ଏବଂ ତାଙ୍କୁ ନେଇ ସୈନ୍ୟମାନେ ହାଜତରେ ରଖିଲେ । ରାତିରେ ତାଙ୍କୁ ଖାଇବାକୁ ଦିଆଗଲା, ମାତ୍ର କେହି ଖାଇଲେ ନାହିଁ । କାରଣ ସକାଳେ ସୈନ୍ୟମାନଙ୍କ ଗୁଳିରେ ମରିଯାଇଥିବା ତରୁଣ ଆଠଙ୍କ ବାଧର ଶୋକ ସେମାନେ ଭୁଲି ପାରି ନ ଥିଲେ । ବଡ଼ ସେନା ଅଫିସର ଷ୍ଟିଭେନ୍‌ସନ୍ ମେ ୨୦ ତାରିଖରେ ମୋଟର ଲଞ୍ଚରେ କଳ୍ପନାଙ୍କୁ ଚଟ୍ଟଗ୍ରାମ ସହରକୁ ନେଇଗଲେ ଏବଂ ତାଙ୍କୁ ସେଠାରେ ପଚାରିଲେ, "ତୁମ୍ଭେ ଏପରି କାହିଁକି କଲ ?" କଳ୍ପନା କହିଲେ, "ତୁମ୍ଭେ ଆମ୍ଭର ସ୍ୱାଧୀନତା ଛଡ଼ାଇ ନେଇଛ. ସେଥିପାଇଁ ଆମ୍ଭେମାନେ ଲଢ଼ୁଛୁ ।" ସେଥିରେ ସେନା ଅଫିସର କହିଲେ, "ତୁମେ କେଡ଼େ ଅବୁଝା ପିଲା !" ଊଣେଇଶ ବର୍ଷର ବୀର ବାଳିକାର ପ୍ରଶଂସା ସମସ୍ତେ

ମୁକ୍ତ କଣ୍ଠରେ କହୁଥିଲେ । ପୋଲିସ ବା ସେନା ତାଙ୍କ ବିଚାରପାଇଁ ତାଙ୍କୁ ଅଭିଯୁକ୍ତ ନାରୀ ବୋଲି କହୁଥିଲେ ।

ସୁପରିଣ୍ଟେଣ୍ଡେଣ୍ଟ ସ୍ପ୍ରିଙ୍ଗ ଫିଲଡ୍ କଳ୍ପନାଙ୍କ ହାତ କଷି ହୋଇ ବନ୍ଧା ହୋଇଥିବାର ଦେଖି ତାହା ଫିଟାଇ ଦେଲେ ଏବଂ ସୁବେଦାରଙ୍କୁ କହିଲେ, "ତୁମ୍ଭେ ସ୍ତ୍ରୀଲୋକଙ୍କ ସହ ଭଦ୍ର ବ୍ୟବହାର କରିବାକୁ କଣ ଶିଖି ନାହଁ ।" ପୁଣି ନରମ ସ୍ୱରରେ କଳ୍ପନାଙ୍କୁ ପଚାରିଲେ, "ତୁମର କଣ କିଛି ବକ୍ତବ୍ୟ ଅଛି " ମାତ୍ର ସେ କହିଲେ "ମୋର କିଛି ବକ୍ତବ୍ୟ ନାହିଁ ।" ତାପରେ ତାଙ୍କୁ ଜେଲକୁ ପଠାଇ ଦିଆଗଲା । ମାସେ କାଳ ଜେଲରେ ରହିବା ପରେ କଳ୍ପନା ଜାଣି ପାରିଲେ ଯେ ସୂର୍ଯ୍ୟସେନ, ତାରକେଶ୍ୱର ଏବଂ ଦସ୍ତିଦାରଙ୍କ ନାମରେ ଦ୍ୱିତୀୟଥର ପୁଲିସ ପୁଣି ମୋକଦ୍ଦମା ତିଆରି କରୁଛି । ଜଣେ ହିନ୍ଦୁ, ଜଣେ ମୁସଲମାନ ଏବଂ ଜଣେ ଇଂରେଜକୁ ମିଶାଇ ଗୋଟିଏ ବିଚାର ଟ୍ରିବ୍ୟୁନାଲ ଗଠିତ ହେଲା । ଦୁଇ ମାସ କାଳ ବିଚାର ହେଲା, କୌଣସି ଲୋକର ସେ ଅଦାଲତକୁ ଯିବାର ଅନୁମତି ନ ଥିଲା । ମାତ୍ର ଆତଙ୍କବାଦୀମାନଙ୍କ ସମ୍ପର୍କୀୟ ଲୋକମାନଙ୍କ ନିମନ୍ତେ କୌଣସି ବାଧା ନ ଥିଲା । ଆତଙ୍କବାଦୀମାନଙ୍କର ଯେତେ କାଗଜପତ୍ର ଧରା ପଡ଼ିଥିଲା; ସେଥିରେ ଆଉ ସେମାନଙ୍କ ମଧ୍ୟରୁ କାହାରି ଖଲାସ ହେବାର ଆଶା ନ ଥିଲା । ତିନି ଜଣ ଯାକ ଫାଶୀ ହୁକୁମ ଅପେକ୍ଷା କରି ରହିଥିଲେ । ଅଗଷ୍ଟ ୧୪ ତାରିଖରେ ସୂର୍ଯ୍ୟସେନ ଏବଂ ତାରକେଶ୍ୱରଙ୍କୁ ଫାଶୀ ହୁକୁମ ହୋଇଗଲା । କଳ୍ପନାଙ୍କ ବୟସ କମ ଥିଲା ଏବଂ ସେ ସ୍ତ୍ରୀ ଥିବାରୁ ତାଙ୍କୁ ଯାବଜ୍ଜୀବନ ଦ୍ୱୀପାନ୍ତର ଆଦେଶ ହୋଇଥିଲା । ସୂର୍ଯ୍ୟସେନଙ୍କ ଫାଶୀ ହୁକୁମ ଦେଖି ଏବଂ ସେ ସ୍ତ୍ରୀ ବୋଲି ତାଙ୍କୁ କୋହଳ ଦଣ୍ଡ ଦେଖି କଳ୍ପନା ନିଜେ ସ୍ତ୍ରୀ ବୋଲି ଅପମାନିତା ବୋଧ କରୁଥିଲେ । ଶେଷଥର ପାଇଁ ଦୁଇ ସାଥିଙ୍କୁ

ଅଦାଲତରେ ସେ ଦେଖିଥିଲେ । ତା ପରେ ଆଉ କେବେ ଦେଖି ନାହାନ୍ତି । ଅଦାଲତର ଫେସଲା ପରେ କଳ୍ପନାଙ୍କୁ ହିଜଲି ଜେଲକୁ ପଠାଇ ଦିଆଗଲା । ହାଇକୋର୍ଟ ଅପିଲରେ କିଛି ଫଳ ହେଲା ନାହିଁ । ଦୁଇଜଣ ସାଥିଙ୍କୁ ଫାଶୀ ହୋଇଗଲା ।

ତିନିମାସ ହିଜଲି ଜେଲରେ ରହିବା ପରେ ତାଙ୍କୁ ୧୯୩୩ ନଭେମ୍ବର ୨୯ ତାରିଖରେ ରାଜସାହି ଜେଲକୁ ତାଙ୍କୁ ପଠାଇ ଦିଆଯାଇଥିଲା । ସେଠାରେ ୬ ମାସ କାଳ ଜେଲରେ ସିଲାଇ କାମ କରୁଥିଲେ । ବିବେକାନନ୍ଦଙ୍କର ଗ୍ରନ୍ଥ ପ୍ରତି ତାଙ୍କର ଖୁବ୍ ଶ୍ରଦ୍ଧା ଥିଲା । ୧୯୩୪ ସେପ୍ଟେମ୍ବରଠାରୁ ୧୯୩୫ ଅକ୍ଟୋବର ପର୍ଯ୍ୟନ୍ତ ମେଦିନୀପୁର ଜେଲରେ କଳ୍ପନା ଦେଢ଼ ବର୍ଷ ରହିଥିଲେ । ସେଠାରେ ମଧ୍ୟ ସିଲାଇ କାମ ତାଙ୍କୁ ଦିଆଯାଇଥିଲା । ପଢ଼ିବାକୁ କେବଳ ସାଧାରଣ ଉପନ୍ୟାସ ମିଳୁଥିଲା । ସେହି ଜେଲକୁ କେତେକ ବାଙ୍ଗାଳୀ ଝିଅମାନଙ୍କୁ ଅଣା ଯିବାରୁ କଳ୍ପନାଙ୍କୁ ଦିନାଜପୁର ଜେଲକୁ ପଠାଇ ଦିଆଗଲା । ସେଠାରେ ଏଗାର ମାସ ରହିଲା ପରେ ତାଙ୍କୁ ପୁଣି ମେଦିନୀପୁର ଅଣାଗଲା । ଯେତେବେଳେ ୧୯୩୬-୩୭ ମସିହାରେ ଦେଶରେ କଂଗ୍ରେସ ମନ୍ତ୍ରୀତ୍ୱ ଥିଲା, ସେତେବେଳେ ଆତଙ୍କବାଦୀଙ୍କ ଲମ୍ବା ସଜା କାଟି ଦେବା ନିମନ୍ତେ ଓ ଝିଅମାନଙ୍କର ଖଲାସ ନିମନ୍ତେ ଏବଂ ରାଜନୈତିକ ବନ୍ଦୀମାନଙ୍କ ଖଲାସ ପାଇଁ ଦେଶରେ ଆନ୍ଦୋଳନ ଚାଲିଥିଲା । ମହାତ୍ମା ଗାନ୍ଧୀଙ୍କ ସହିତ ଭେଟ କରିବାକୁ କଳ୍ପନାଙ୍କୁ କଲିକତା ଅଣା ଯାଇଥିଲା । ଗାନ୍ଧିଜୀ ପଚାରିବାରୁ ସେ କହିଲେ—"ମୋର ଆତଙ୍କବାଦରେ ବିଶ୍ୱାସ ନାହିଁ ।" ଦିନକ ପରେ ତାଙ୍କୁ ପୁଣି ମେଦିନୀପୁର ଜେଲକୁ ଅଣାଗଲା । ଚାରିଆଡ଼େ ସରକାରୀ ପରାମର୍ଶଦାତା କମିଟି ସ୍ତ୍ରୀଲୋକ-ମାନଙ୍କୁ ଛାଡ଼ି ଦେବାକୁ ସରକାରଙ୍କୁ ସୁପାରିସ୍ କରିଥିଲେ । ଏଣ୍ଡ୍ରୁଜ୍

ସାହେବ ମଧ୍ୟ ସେଥିପାଇଁ ବଙ୍ଗଳା ସରକାରଙ୍କ ସହ ଦେଖା କରିଥିଲେ । ଶେଷରେ ୧୯୩୯ ମେ ପନ୍ଦ୍ରହରେ କଳ୍ପନାଙ୍କୁ ଜେଲରୁ ଖଲାସ କରି ଦିଆଯାଇଥିଲା ।

ପୁରୁଷ ଆତଙ୍କବାଦୀମାନେ ଜେଲରେ ବେଶି ଥିଲେ । ମାର୍କସ୍‌ବାଦୀ ସାହିତ୍ୟ ପଢ଼ିବାକୁ ସେମାନଙ୍କର ସୁବିଧା ଥିଲା ଏବଂ ଭାବର ଆଦାନପ୍ରଦାନ ପାଇଁ ମଧ୍ୟ ସୁବିଧା ଥିଲା । ସ୍ତ୍ରୀ ରାଜବନ୍ଦୀ-ମାନଙ୍କ ପାଇଁ ସେପରି ସୁବିଧା ନ ଥିଲା । କଳ୍ପନା ବାହାରକୁ ଆସି ଦେଖିଲେ ତାଙ୍କର ତରୁଣ ସାଥିମାନେ ସମସ୍ତେ କମ୍ୟୁନିଷ୍ଟ ପାର୍ଟିରେ କାମ କରୁଛନ୍ତି । ଚଟ୍ଟଗ୍ରାମ ଅସ୍ତ୍ରାଗାର ଆକ୍ରମଣରେ ସଜା ପାଇଥିବା ମାଷ୍ଟରସୀ ପୁଅ ଭାଇ ସୁବୋଧଙ୍କ ସଙ୍ଗେ କଳ୍ପନାଙ୍କର ଦେଖା ହେଲା । ସେ ଅନ୍ୟାନ୍ୟ ଦଳର ଲୋକଙ୍କ ପରି ନିଜ ଦଳଭୁକ୍ତ କରିବା ନିମନ୍ତେ କୌଣସି ବାକ୍ୟବ୍ୟୟ ନ କରି କହିଲେ—"ମୁଁ ତ ନିଜେ ସମସ୍ତ ବିଚାର କରି କମ୍ୟୁନିଷ୍ଟ ପାର୍ଟିରେ ଯୋଗ ଦେଉଅଛି; ତୁମେ ଭାବିଚିନ୍ତି ଯେଉଁ ରାସ୍ତା ଗ୍ରହଣ କରିବ, କର । ଜେଲରେ କଳ୍ପନାଙ୍କ ଭାବ ବିପ୍ଳବ-ବାଦଠାରୁ ଟିକିଏ ମାତ୍ର ଝୁଙ୍କି ନ ଥିଲା । କେବଳ ସଙ୍ଗେ ସଙ୍ଗେ ବେଦାନ୍ତବାଦ ଏବଂ ଗୀତା ଉପରେ ତାଙ୍କର ଦୃଢ଼ ବିଶ୍ୱାସ ଜନ୍ମିଥିଲା । ସମାଜ—ତନ୍ତ୍ରବାଦ କଥା ଶୁଣିଲେ ସେ ଚିନ୍ତା ନ କରି ମଧ୍ୟ କହି ଦିଅନ୍ତି—" ହଁ ଏ ଭଲ ରାସ୍ତା ।" ସେ ବାହାରକୁ ଆସି ଦେଶର ଅବସ୍ଥାରେ ଯେ ପରିବର୍ତ୍ତନ ଦେଖିଥିଲେ ତାହାର ପ୍ରଭାବ ତାଙ୍କ ଉପରେ ପଡ଼ିଥିଲା । କୌଣସି କଲେଜ ତାଙ୍କୁ ନେବାକୁ ପ୍ରସ୍ତୁତ ନ ଥିଲା । ତେଣୁ ବି, ଏସ୍, ସି, ପରୀକ୍ଷା ଦେବାର ରାସ୍ତା ମଧ୍ୟ ତାଙ୍କର ନ ଥିଲା । ଚଟ୍ଟଗ୍ରାମରେ ପୂର୍ବର ରାଜନୈତିକ ବାୟୁମଣ୍ଡଳ ପରିବର୍ତ୍ତିତ ହୋଇଥିଲା । ଆତଙ୍କବାଦ ପରିବର୍ତ୍ତେ ମାର୍କସବାଦ ହାଉଆ ବହୁଥିଲା । କଳ୍ପନା ମଧ୍ୟ କମ୍ୟୁନିଷ୍ଟ ଝିଅମାନଙ୍କ ସଙ୍ଗେ

ମିଳି କାମ କରିବା ଏବଂ ସାହିତ୍ୟ ପଢ଼ିବାର ସୁଯୋଗ ପାଇଥିଲେ। ଏହାପରେ ତାଙ୍କୁ ଏପରି ଟାଇଫଏଡ଼୍ ଜ୍ୱର ହୋଇଥିଲା ଯେ, ପନ୍ଦର ଦିନ କାଳ ସେ ମୃତ୍ୟୁ ସଙ୍ଗେ ଯୁଦ୍ଧ କରି ବଞ୍ଚିଲେ । କାମ ଏବଂ ବେମାରିରୁ ବଞ୍ଚି ଉଠି କେବଳ ତିନିମାସ ତାଙ୍କୁ ପଢ଼ିବାକୁ ସମୟ ମିଳିଥିଲା । ବଙ୍ଗଳା, ଇଂରାଜୀ ଏବଂ ଗଣିତ ନେଇ ସେ ୧୯୮୦ରେ ବି. ଏ. ପାଶ କଲେ । ପରୀକ୍ଷାରେ ପାଶ କଲାପରେ ସେ ନିଜ ରାସ୍ତା ବାଛି ପାରିଥିଲେ । ଦେଖିଲେ, ତାଙ୍କ ମନର ଗତି ସଙ୍ଗେ କମ୍ୟୁନିଷ୍ଟ ପାର୍ଟିର ମତ ଏବଂ ଉଦ୍ଦେଶ୍ୟ ମିଳି ପାରିବ । ଚଟ୍ଟଗ୍ରାମରେ ପରିବାରର ଲୋକେ ତାଙ୍କୁ ସେପରି ଭଲ ନଜରରେ ଦେଖୁ ନ ଥିଲେ । ସେଥିପାଇଁ ସେ ଭଲ କରି କାମ କରିବାକୁ ଏବଂ ଗଣିତ ଶାସ୍ତ୍ରରେ ଏମ୍. ଏ,. ଦେବାକୁ କଲିକତାକୁ ଆସି ବିଶ୍ୱବିଦ୍ୟାଳୟରେ ଭର୍ତ୍ତି ହୋଇଗଲେ । କିନ୍ତୁ ଅଧିକ ସମୟ ତାଙ୍କୁ ମଜୁରିଆଙ୍କ ଭିତରେ କାମ କରିବାକୁ ପଡ଼ୁଥିଲା । କଲିକତା ପୋଲିସ ମଧ୍ୟ ତାଙ୍କୁ ସୁସ୍ଥରେ ରହିଁ ଦେଲେ ନାହିଁ । ୧୯୪୦ ନଭେମ୍ବର କୋଡ଼ିଏ ତାରିଖରେ କଲିକତାରୁ ବାହାରି ଯିବାକୁ ତାଙ୍କୁ ହୁକୁମ ହେଲା ଏବଂ ଚଟ୍ଟଗ୍ରାମରେ ପୁଣି ନଜର ବନ୍ଦୀରେ ତାଙ୍କୁ ରଖାଗଲା । ୧୯୪୧ ମେ ପର୍ଯ୍ୟନ୍ତ ସେ ନଜରବନ୍ଦୀ ହୋଇ ରହିଥିଲେ । ତା ପରେ ସେ ଖଲାସ ହେଲେ । ତଥାପି ତାଙ୍କର ପରିତ୍ରାଣ ନ ଥିଲା । ମ୍ୟୁନିସି-ପାଲଟି ସୀମାର ବାହାରକୁ ଯିବାକୁ ତାଙ୍କୁ ଅନୁମତି ଦିଆ ଯାଇ ନ ଥିଲା । ସେଥିପାଇଁ ଭୂତପୂର୍ବ ଆତଙ୍କବାଦୀଙ୍କ ସଙ୍ଗେ ସେ ମିଳିପାରୁ ନ ଥିଲେ । କିନ୍ତୁ କଳ୍ପନା ଘରେ ବସିବାର ଲୋକ ନ ଥିଲେ। ସ୍ତ୍ରୀଲୋକମାନଙ୍କ ମଧ୍ୟରେ ସେ କାମ କରିବାକୁ ଲାଗି ପଡ଼ିଲେ । ସେମାନଙ୍କ ମଧ୍ୟରେ ଅଧ୍ୟୟନ ଚକ୍ର ଖୋଲିଥିଲେ ଓ ପାଥେୟ ନାମକ ଗୋଟିଏ ହସ୍ତଲିପି ପତ୍ର ସମ୍ପାଦନ କରିଥିଲେ । ସେ ପତ୍ରିକାରେ

କମ୍ୟୁନିଜମ୍ କଥା ବହୁତ ଲେଖାଯାଉଥିଲା । ସବୁ ଶ୍ରେଣୀର ନାରୀ ପାଇଁ ସେ ନାରୀ ସମିତି ଖୋଲିଥିଲେ । ସେଥିରେ ସର୍ବମୋଟ ଦୁଇଶହ ନାରୀ ସଭ୍ୟା ହୋଇଥିଲେ । ସ୍ତ୍ରୀମାନଙ୍କ ପାଇଁ ରାତିରେ ଏବଂ ଖରାବେଳେ ସ୍କୁଲ ମଧ୍ୟ ଖୋଲିଥିଲେ । ଏହି ସ୍କୁଲରେ ସାନ୍ତାଳ, ମେହେନ୍ତର, ଧୋବା ଶ୍ରେଣୀର ସ୍ତ୍ରୀମାନେ ବହୁତ ପଢ଼ାଶୁଣା କରିବାକୁ ଆସୁଥିଲେ ।

୧୯୪୨ରେ କମ୍ୟୁନିଷ୍ଟ ପାର୍ଟିର ନୀତି ସମ୍ବନ୍ଧରେ ସରକାର ଜାଣି ପାରିଲେ ଏବଂ କଳ୍ପନା ଜାପାନୀ ଫାସିଷ୍ଟମାନଙ୍କ ବିରୁଦ୍ଧରେ କାମ କରିବାକୁ କହିବାରୁ ତାଙ୍କୁ ଛାଡ଼ିଦେଲେ । କଳ୍ପନାଙ୍କ ଦେହ ଭଲ ନ ଥିଲା । ପୁଣି ରାତିଦିନ କାମ କରିବାରୁ ୧୯୪୨ରେ ସେ ସ୍ୱାସ୍ଥ୍ୟ ହରାଇବାରୁ ଟାଇଫଏଡ ଜ୍ୱର ହେଲା । ଖଟ ଉପରେ ରୋଗ-ଯନ୍ତ୍ରଣାରେ ପଡ଼ି ଯେତେବେଳେ ସେ ଶୁଣିଲେ ତାଙ୍କୁ ପାର୍ଟି ମେମ୍ବର କରାଯାଇଅଛି, ସେତେବେଳେ ସେ ଅପାର ଆନନ୍ଦ ଅନୁଭବ କଲେ । ସେପ୍ଟେମ୍ବର ମାସରେ ଜାପାନୀ ଆକ୍ରମଣରୁ ରକ୍ଷା ପାଇବା ପାଇଁ ଗଠିତ ହେଉଥିବା ସୈନ୍ୟ ଦଳଭୁକ୍ତ ହୋଇ ସେ ଶିକ୍ଷା କରିଥିଲେ ।

ସୂର୍ଯ୍ୟ ସେନ, ଅନନ୍ତ ସିଂହ, ଗଣେଷ ଘୋଷଙ୍କ ସଙ୍ଗେ କଦମ ରଖି ଚାଲୁଥିବା କଳ୍ପନା କିପରି ଚୁପ ହୋଇ ରହିବେ ? ସେଥିପାଇଁ ନାରୀ ସମିତି ମଧ୍ୟରେ ଆତ୍ମରକ୍ଷାର ଉପାୟ ମଧ୍ୟ ସେ ଶିଖାଇବାକୁ ଲାଗିଲେ । ଡିସେମ୍ବର ମାସରେ ପାର୍ଟିର ଉଦ୍ଦେଶ୍ୟ ପ୍ରଭୃତି ଶିକ୍ଷାକରିବା ପାଇଁ ସେ ବମ୍ବେ ଯାଇଥିଲେ । ପାର୍ଟିର ଜେନେରାଲ ସେକ୍ରେଟାରୀଙ୍କ ନାମ ଏବଂ ଯୋଗ୍ୟତା ସମ୍ବନ୍ଧରେ ସେ ଅନେକ କଥା ଶୁଣିଥିଲେ । ମାତ୍ର ସେହି ପୂର୍ଣ୍ଣଚନ୍ଦ୍ର ଯୋଷୀଙ୍କୁ ସେ ପ୍ରଥମେ ବମ୍ବେରେ ଦେଖିଲେ ଏବଂ

ତାଙ୍କର ବକ୍ତୃତା ଶୁଣିଲେ । ତାହାପରେ ସେ କଲିକତା ଫେରି ସେଠାରୁ ଚଟ୍ଟଗ୍ରାମ ଗଲେ । ତତ୍ପରେ ସମସ୍ତ ବଙ୍ଗ ପ୍ରଦେଶ ପାର୍ଟିର ସଂଗଠିକା ରୂପେ ପାର୍ଟି ତାଙ୍କୁ କଲିକତା ଡାକିନେଲେ । ୧୯୪୩ରେ ସେ ପାର୍ଟି କମିଟିର ସଂଗଠିକା ଥିଲେ । କଲ୍ପନା ଏକା ନୁହେଁ, ତାଙ୍କର ଗୃହର ଭଉଣୀ ଏବଂ ଘରର ସମସ୍ତେ କମ୍ୟୁନିଷ୍ଟ ପାର୍ଟି ଭୁକ୍ତହେଲେ । ଜୁନ୍ ୨୯ ତାରିଖରେ ପାର୍ଟି କାମ ପାଇଁ କଲ୍ପନା ବମ୍ବେ ଯାଇଥିଲେ । ପୁଣି ଶ୍ରୀଯୁକ୍ତ ଯୋଷୀଙ୍କ ସଙ୍ଗେ ତାଙ୍କର ଦେଖା ହେଲା । ଯୋଷୀ ମହାଶୟ ଆତଙ୍କବାଦର ବିରୋଧୀ ହେଲେ ମଧ୍ୟ ବଙ୍ଗଳାର ବୀର ସହୀଦମାନଙ୍କ ଆତ୍ମବଳିର ପ୍ରଶଂସକ ଥିଲେ ଏବଂ ତାଙ୍କର ତ୍ୟାଗ ଉପରେ ବଙ୍ଗଳାର ପାର୍ଟି ଜବରଦସ୍ତ ହୋଇ ବସିଛି ବୋଲି ସେ ବିଶ୍ୱାସ ରଖିଥିଲେ । ବଙ୍ଗଳାର ସହୀଦ ନରନାରୀଙ୍କର ପୂଜକ ଯୋଷୀ କଲ୍ପନାଙ୍କ ବୀରତ୍ୱ ଏବଂ ସାହସରେ ମୁଗ୍‌ଧ ହୋଇ ତାଙ୍କୁ ପତ୍ନୀତ୍ୱରେ ବରଣ କରିଥିଲେ । କଲ୍ପନା ମଧ୍ୟ ଏହି ବିବାହକୁ ଜୀବନର କର୍ମ ପ୍ରଣାଳୀ ଓ ଆଦର୍ଶକୁ ରୂପଦାନ କରିବା ପାଇଁ ବାଞ୍ଛନୀୟ ବୋଲି ମନେ କରି ଯୋଷୀଙ୍କୁ ପତିରୂପେ ବରଣ କରି ଥିଲେ । ବର୍ତ୍ତମାନ ଶ୍ରୀମତୀ କଲ୍ପନା ଦତ୍ତ ନିଖିଳ ଭାରତର କମ୍ୟୁନିଷ୍ଟ ପାର୍ଟିର ପ୍ରେସିଡେଣ୍ଟ ପି. ସି. ଯୋଷୀଙ୍କ ପତ୍ନୀ ଅଟନ୍ତି । ବଙ୍ଗଳାର ଏବଂ ଭାରତର ନାରୀ ତାଙ୍କର ସାହସ ଓ ବୀରତ୍ୱ ପାଇ ଚିରଦିନ ଗୌରବ ବୋଧ କରିବେ, ଏଥିରେ ସନ୍ଦେହ ନାହିଁ ।



# ଭେରା ଫିଗ୍‌ନାର

ସେ ବହୁଦିନର କଥା—ସେତେବେଳେ ନିହିଲିଷ୍ଟ ଆନ୍ଦୋଳନର ଶିଶୁ ଅବସ୍ଥା । ରୁଷିଆ ଗୃହରେ ସେତେବେଳେ ନୂଆ ହୋଇ ରାଜନୀତିକ ହତ୍ୟା ଆମଦାନି ହୋଇଥାଏ । ସେମାନଙ୍କର ଗୋଲାଗୁଳି ବର୍ଷିବା ସାଥିରେ ସମ୍ଭବ, ଅସମ୍ଭବ ନାନା କଥା କଳ୍ପନା କରି ସେ ସମୟରେ ନିତି ନୂଆ ନୂଆ ଗଳ୍ପ, କାହାଣୀର ସୃଷ୍ଟି ହେଉଥିଲା । କୌଣସି କୌଣସି ସମ୍ବାଦପତ୍ର—ଏ ଦୁନିଆ ଛଡ଼ା ନିହିଲିଷ୍ଟମାନେ ଯେ ପଙ୍ଗପାଳ ପରି ରୁଷିଆଯାକ ମାଡ଼ିଗଲେଣି—ଏ କଥା ବି ଶପଥପୂର୍ବକ କହି ପକାଇଲେ । ଏପରି କି କେହି କେହି ସେମାନଙ୍କ ସଂଖ୍ୟା ଲକ୍ଷାଧିକ ବୋଲି ଅଙ୍କକଷି ସଂଖ୍ୟାନୁପାତ ମଧ୍ୟ ଆବିଷ୍କାର ଓ ପ୍ରଚାର କରି ପକାଇଲେ । କିନ୍ତୁ ଭିତର କଥା କହିବାକୁ ଗଲେ ସେତେବେଳେ ବିରାଟ ରୁଷିଆ ସାମ୍ରାଜ୍ୟର ଭୀତି ଉତ୍ପାଦକ ନିହିଲିଷ୍ଟ ଦଳଙ୍କ ସଂଖ୍ୟା ଜମାରୁ କୋଡ଼ିଏରୁ ଚାଳିଶ ପର୍ଯ୍ୟନ୍ତ ଥିଲା । କେବେ ଚାଳିଶ ଟପି ନ ଥିଲା । ଦିନ ଏପରି ଆସିଛି, ଯେଉଁଦିନ ଏ ବିରାଟ ନିହିଲିଷ୍ଟ ଆନ୍ଦୋଳନ ଜମା ଆଠ ଜଣଙ୍କ ହେତୁ ବଞ୍ଚି ରହିଥିଲା । ମାତ୍ର ଏହି ଆଠଜଣ ସଭ୍ୟଙ୍କଦ୍ୱାରା ବିରାଟ ରୁଷ ସାମ୍ରାଜ୍ୟର ଷୋଳକୋଟି ଲୋକଙ୍କର ଆତଙ୍କ ସ୍ଥଳ ହୋଇ ଶତ ଶତ ଡିଉକ୍, ସେନାପତି ଓ ପ୍ରଧାନ ମନ୍ତ୍ରୀମାନଙ୍କ ହତ୍ୟା କରାଯାଇଥିଲା । ରାତି ପରେ ରାତି ଜାର୍‌ଙ୍କ ସୁରକ୍ଷିତ ପୁଲିସ ବାହିନୀ ଘର, ହୋଟେଲ, କାଫେ ପ୍ରଭୃତି

ଖାନତଲ୍ଲସ କରି ସମ୍ଭବ ଅସମ୍ଭବ ନାନା ସ୍ଥାନ ଖୋଜି ହଜାର ହଜାର ଲୋକ ନେଇ ହାଜତ୍ ବୋଝେଇ କରୁଛି—ସାଇବେରିଆର ନିର୍ଜନ ତୁଷାର ପ୍ରାନ୍ତରରେ ନିର୍ବାସିତ କରୁଛି, କିନ୍ତୁ ନିହିଲିଷ୍ଟ ଆନ୍ଦୋଳନର ତିଳେ ହେଲେ କ୍ଷତି କରି ପାରୁନାହିଁ । ଭେରା ଫିଗ୍‌ନାର୍ ତାଙ୍କର ଆଠଜଣ ସଙ୍ଗୀଙ୍କ ସହିତ ହୁଏତ ବୋମା, ଡିନାମାଇଟ୍ ତିଆରି କରୁଛନ୍ତି, ନଚେତ୍ କେଉଁଠି ରାଜନୈତିକ ହତ୍ୟା ଷଡ଼ଯନ୍ତ୍ରରେ ସମୟ କଟାଇଛନ୍ତି । ଯେଉଁମାନେ ଧରା ବି ପଡ଼ିଛନ୍ତି, ସେମାନେ ଶତ ନିର୍ଯ୍ୟାତନାରେ ସଙ୍ଗୀମାନଙ୍କ ବିରୁଦ୍ଧରେ ବିଶ୍ୱାସଘାତକତା କରି ନାହାନ୍ତି; ସେମାନଙ୍କ ମୁହଁରୁ କଥା ଫିଟି ନାହିଁ—ନିଜର ସହଚରମାନଙ୍କୁ ସେମାନେ ସରକାରୀ ପ୍ରଲୋଭନରେ ପଡ଼ି ଧରାଇ ଦେଇ ନାହାନ୍ତି ।

କଲେଜର ଛାତ୍ର ଆଉ ଦଶଜଣ ଛାତ୍ରୀଙ୍କ ପରି ଭେରା ନିଜ ଜୀବନକୁ ଦଶଜଣ ଚାଲି ଯାଇଥିବା, ଘସରା ପଡ଼ିଥିବା ମଡ଼ାଣ ରାସ୍ତାରେ ଚଳାଇ ନେଇ ପାରି ନାହାନ୍ତି; ହୁଏତ ତାଙ୍କର ଏହା ଦୋଷ ନୁହେଁ । କାରଣ ଅସ୍ୱାଭାବିକ ଦୁର୍ଗମ ଜୀବନ ପ୍ରତି ଏକ ପ୍ରକାର ମୋହମୟ ଆକର୍ଷଣ ଓ ନୂତନତା ପ୍ରତି ଏକ ପ୍ରକାର ବିଷମ ଲୁବ୍‌ଧତା ତାଙ୍କୁ ତାଙ୍କର ସାଙ୍ଗର ଆଉ ଦଶଜଣ ଝିଅମାନଙ୍କ ସରିସାରେ ପାଦ ପକାଇବାକୁ ଦେଉ ନ ଥିଲା । ରାଜନୀତି ପ୍ରତି ଆଜନ୍ମ ଅନୁରାଗ, ଜାରର ଶୋଷଣ ନୈତିକ ରାଜ୍ୟ ଶାସନ ପଦ୍ଧତି ପ୍ରତି କଠିନ ଘୃଣା, ତାଙ୍କୁ ବିପ୍ଳବପଥର ପଥିକ କରିଥିଲା । ଶେଷରେ କଲେଜର ଶେଷ ପରୀକ୍ଷା ଦେବା ଆଗରୁ ତାଙ୍କୁ ପାଠ ଛାଡ଼ିବାକୁ ହୋଇଥିଲା ।

ଭେରା ଫିଗ୍‌ନାର ତାଙ୍କର ତୀକ୍ଷ୍ଣ ବୁଦ୍ଧି ବିଭବ ପାଇଁ ଓ କାର୍ଯ୍ୟରେ ଶୃଙ୍ଖଳା ଓ ପ୍ରଣାଳୀ ରକ୍ଷା ପାଇଁ ସେ ସମସ୍ତଙ୍କର

ପ୍ରିୟପାତ୍ରୀ ହୋଇଥିଲେ । ଜଣେ ସଭ୍ୟ ସେହି ବିପଦକାଳରେ ଚପଳତାର ମୂଲ୍ୟ ଦେବାକୁ ଯାଇ ବନ୍ଦୀ ହୋଇଗଲା । ଫଳରେ କାର୍ଯ୍ୟକାରୀ ସମିତିର ସଭ୍ୟମାନଙ୍କର ଅଭାବ ଘଟିଥିଲା । ସମ୍ଭବତଃ ତରୁଣ ବିପ୍ଳବୀଙ୍କ ଭିତରେ ଭେରାହିଁ ସର୍ବାପେକ୍ଷା କର୍ମଠ ଓ ବୁଦ୍ଧିମତୀ ହୋଇଥିବାରୁ ସେହି ସଭ୍ୟପଦରେ ତାଙ୍କୁ ନିର୍ବାଚିତ କରିଥିଲେ । ସେତେବେଳେ ତାଙ୍କର ବୟସ ପଚିଶ ବର୍ଷ ।

କାଳକ୍ରମେ ନିଜର ଯୋଗ୍ୟତା ଓ ଦକ୍ଷତା ଗୁଣରୁ ସେ ନିହିଲିଷ୍ଟ ଦଳର ପ୍ରକୃତ ନେତ୍ରୀ ହୋଇ ଉଠିଥିଲେ । ତାଙ୍କର ନିର୍ଦ୍ଦେଶ ଅନୁଯାୟୀ ନିହିଲିଷ୍ଟଙ୍କ ବନ୍ଧୁକରୁ ଗୁଳି ଫୁଟେ—ଅଗ୍ନି ନଳୀରେ ଅଗ୍ନି ବର୍ଷେ । ତାଙ୍କର ଆଦେଶରେ ନିହିଲିଷ୍ଟଙ୍କ ହାତରୁ ବୋମା ଖସୁଥିଲା ।

୧୮୮୦ ଖ୍ରୀଷ୍ଟାବ୍ଦରେ ହଠାତ୍ ଭେରାଙ୍କର ଖିଆଲ ହେଲା ଯେ, ଜାର ଦ୍ୱିତୀୟ ଆଲେକଜାଣ୍ଡାରଙ୍କୁ ହତ୍ୟା କରି ସ୍ୱେଚ୍ଛାଚାର ତନ୍ତ୍ରର ଗୋଟାଏ ଅଙ୍କର ଯବନିକା ପକାନ୍ତେ । ପ୍ରସ୍ତାବଟି ସର୍ବସମ୍ମତିକ୍ରମେ ଗୃହୀତ ହେବା ନିମନ୍ତେ ଭେରା ତାଙ୍କର ଦଳର କାର୍ଯ୍ୟକାରୀ କମିଟିରେ ପକାଇଥିଲେ । ଭେରା ପ୍ରସ୍ତାବ ଉପସ୍ଥାପିତ କଲାପରେ ବିରାଟ ଏକ ବକ୍ତୃତା ଦେଇ ସମସ୍ତଙ୍କୁ ବୁଝାଇ ଦେଇଥିଲେ ଯେ, ଜାର୍ ଦ୍ୱିତୀୟ ଆଲେକଜାଣ୍ଡାରଙ୍କୁ ହତ୍ୟା କଲାଠାରୁ ବିଦ୍ରୋହ ବିପ୍ଳବ ପ୍ରସାର ଓ ତାହାର ସାଫଲ୍ୟ ନିମନ୍ତେ ଅନ୍ୟ କୌଣସି ଉତ୍କୃଷ୍ଟ ପଥ ନାହିଁ ।

ରାଜାଙ୍କର ରକ୍ଷୀମାନଙ୍କ ଭିତରେ ନିହିଲିଷ୍ଟ ଦଳଭୁକ୍ତ କୌଣସି ସଭ୍ୟ ନ ଥିଲେ । ସେମାନେ ମଧ୍ୟ ଜାର ଅନୁଚର କି ରକ୍ଷୀମାନଙ୍କ ମଧ୍ୟରୁ କାହାରିକୁ ଚିହ୍ନି ନ ଥିଲେ; ଫଳରେ ଯେ ଜାର୍ ଦୁର୍ଜୟ ଯୋଦ୍ଧା, ରକ୍ଷୀ ଓ ପୁଲିସ ଭିତରେ ଦୁର୍ଭେଦ୍ୟ ବ୍ୟୂହ ରଚନା କରି

ରହିଛନ୍ତି; ଯାହା ନିକଟରେ ରାଜରକ୍ଷୀ ଓ ଅନୁଚରଙ୍କ ଛଡ଼ା ଆଉ କାହାର ଚିହ୍ନ ଦେଖିବା ଦୁଷ୍କର, ତାଙ୍କୁ କିପରି ହତ୍ୟା କରାଯିବ, ସେହି ଭାବନାରେ ସମସ୍ତେ ଆକୁଳ ।

ତେବେ ସୁଦ୍ଧା କର୍ଯ୍ୟକାରୀ ସମିତି ଭେରାଙ୍କ ପ୍ରସ୍ତାବ ଗ୍ରହଣ କରି ତାଙ୍କୁ ତାଙ୍କର ଉପାୟ ଉଦ୍‌ଭାବନ ଦ୍ୱାରା ବୈପ୍ଳବିକ ଆନ୍ଦୋଳନର ଗୋଟିଏ ଗୌରବୋଜ୍ଜ୍ୱଳ ଅଧ୍ୟାୟର ସମ୍ପୂର୍ଣ୍ଣ ରେଖା ଟାଣିବାର ଭାର ଦେଇଥିଲେ ।

ପ୍ରଥମତଃ ଉଇଣ୍ଟର ପ୍ରାସାଦରେ ଗୋଟିଏ ବା ତତୋଧିକ ବିପ୍ଳବୀଙ୍କୁ ରଖାଇବା ଗୋଟିଏ ଜଟିଳ ସମାସ୍ୟା ହୋଇ ପଡ଼ିଲା । କାର୍ଯ୍ୟକାରୀ ସମିତିର ଦୁଇଜଣ ସଭ୍ୟଙ୍କ ଉପରେ ଏହାର ଭାର ଦିଆଗଲା । ଜଣେ ବଢ଼େଇ, କାଠ ମିସ୍ତ୍ରୀ ନାମ ଚାଲ ଟୁରିନ୍ (Chalturin), ଅନ୍ୟ ଜଣକ ସ୍ଥପତି ବିଜ୍ଞାନର ନବୀନ ଛାତ୍ର ନାମ କାଟକୋସ୍କି (Katkosky) ।

ସେତେବେଳେ ଉଇଣ୍ଟର ପ୍ରସାଦରେ ଦଳେ ମୂଲିଆ କାମ କରୁଥିଲେ । ଚାଲଟୁରିନ୍ ସେମାନଙ୍କ ସହିତ କାମକରିବା ଯୋଗାଡ଼ରେ ରହିଲେ । କିନ୍ତୁ ପୁଲିସମାନେ ମୂଲିଆ ବାଛିବାରେ ଏତେ ସତର୍କ ଥିଲେ ଯେ, ଚାଲଟୁରିନ୍‌ଙ୍କର ସିଧା ସିଧା ଆବେଦନ କରି କାର୍ଯ୍ୟ ପାଇବା ଏକ ରକମ ଅସମ୍ଭବ ଥିଲା ।

ବିପ୍ଳବୀମାନେ ସେଇଥି ଗୋଟିଏ ଅପେକ୍ଷାକୃତ ସହଜ ଉପାୟ ଅବଲମ୍ବନ କଲେ । ପ୍ରାସଦ ନିକଟରେ ଚାଲଟୁରିନ୍ ଗୋଟିଏ ସାମାନ୍ୟ ଦୈନିକ ମଜୁରିଆ କାମ ପାଇଲେ । ଚାହିଁ ଚାହିଁ ଅଳ୍ପଦିନ ଭିତରେ ଅନ୍ୟ ମୂଲିଆଙ୍କ ସହିତ ଜଳଖିଆ ଖିଆବେଳେ ମିଶିବାର ଅବସର ପାଇ ଚାଲ୍‌ଟୁରିନଙ୍କର ଅଭେଦ୍ୟ ଭାବ ବନ୍ଧୁତା ହୋଇଗଲା ।

ଏପରି କେତେଦିନ ବିତିଗଲା । ଦିନେ ଗୁଲ୍‌ଟୁରିନ ମୁହଁ ଶୁଖାଇ ବନ୍ଧୁମାନଙ୍କୁ କହିଲେ, ମୁଁ ଚାକିରିରେ ଇସ୍ତଫା ଦେଲଣି । ତମମାନଙ୍କ କତିରେ ରହି ପାରିବି ଏପରି ଗୋଟିଏ ଚାକିରି ଯଦି ତୁମ୍ଭେମାନେ କରାଇ ଦେବ, ତେବେ ମୁଁ ବଞ୍ଚିପିବି ।" ସ୍ନେହୀ ବନ୍ଧୁମାନେ ଚେଷ୍ଟା କରି ଗୋଟିଏ ଚାକିରି ଜୁଟାଇ ଦେଲେ । ସେ ପୁଣି ଇଭାଣ୍ଡର ପ୍ରାସାଦରେ ବନ୍ଧୁମାନଙ୍କ ସହିତରେ କାମରେ ନିଯୁକ୍ତ ହେଲେ ।

ସେହିଦିନଠୁଁ ପ୍ରତିଦିନ କାମକୁ ଗଲାବେଳେ ଗୁଲ୍‌ଟୁରିନ ନିତି ଗୋଟିଏ ଗୋଟିଏ କରି ଡିନାମାଇଟ ନେଇ ତଳେ ଗୋଟିଏ ଗୋରୁ କୋଠରୀ ଭିତରେ ଲୁଚାଇ ରଖୁଥିଲେ । ସପ୍ତାହ ପରେ ସପ୍ତାହ ଏହିପରି ଏକ ଇତିହାସ ପ୍ରସିଦ୍ଧ ରାଜ ପ୍ରାସାଦ ଉଡ଼ାଇ ଦେବାପାଇଁ ଡିନାମାଇଟ ଜମା ହେବାକୁ ଲାଗିଲା । ଶେଷରେ ଡିନାମାଇଟ୍ ଫୁଟାଇବା ସମସ୍ୟା ହୋଇ ବସିଲା । ଏପରି ସ୍ଥାନରୁ ଫୁଟିବା ଦରକାର ଯେପରି ସେହି ସ୍ଥାନରୁ ଜାରଙ୍କ ଆବାସସ୍ଥାନ ଧ୍ୱଂସ କରାଯାଇ ପାରେ, ସେଥିପାଇଁ ଜାରଙ୍କ ଅବସ୍ଥାନ ନିର୍ଣ୍ଣୟ କରିବା ପାଇଁ ଗୁଲ୍‌ଟୁରିନଙ୍କୁ ସଚେଷ୍ଟ ରହିବାକୁ ପଡ଼ିଥିଲା ।

ପ୍ରାସାଦ ନିକଟରେ ଜାରଙ୍କ ରକ୍ଷୀନିବାସ ରହିଥିଲା । ଜଣେ ରକ୍ଷୀର ଗୋଟିଏ ବାଳିକା କନ୍ୟା ସହିତରେ ଗୁଲଟୁରିନଙ୍କର ଅତିଶୀଘ୍ର ବନ୍ଧୁତ୍ୱ ହୋଇଗଲା । ସେ କନ୍ୟାଟିକୁ ବିବାହରେ ଅଙ୍ଗୀକାର କରାଇ ଓ ନିଜେ ଅଙ୍ଗୀକୃତ ହୋଇ ତାହାର ସାହାଯ୍ୟରେ ରାଜପ୍ରାସାଦ ଦେଖିନେବା ପାଇଁ ସ୍ଥିର କଲେ । ତାପରେ ସେ ଓ କାଟକୋସ୍କି ଦୁହେଁ ସେହି କନ୍ୟାଟିକୁ ସାଙ୍ଗରେ ନେଇ ରାଜ-ପ୍ରାସାଦ ଦେଖି ସାଙ୍ଗେ ସାଙ୍ଗେ ତାହାର ମାନଚିତ୍ର କରି ଆଣିଲେ ।

ମାନଚିତ୍ର ଅଙ୍କା ସରିବାରୁ ଦେଖାଗଲା ଯେ ଜାର ଯେଉଁଠି ରହନ୍ତି, ତା'ତଳେ ଡାଇନାମାଇଟ୍ ରଖିବା ଅସମ୍ଭବ । ସେଥିପାଇଁ ସେମାନେ ବାଧ୍ୟ ହୋଇ ରାଜାଙ୍କ ଖାଇବା ଘର ତଳେ ଡାଇନାମାଇଟ ପୋତି ଆଗାମୀ ରାଜଭୋଜି ପାଇଁ ଅପେକ୍ଷା କଲେ । ସେହି ରକ୍ଷୀ କନ୍ୟା ସହାୟତାରେ ରାଜାଙ୍କ ଭୋଜି ତାରିଖ ମଧ୍ୟ ସେମାନେ ଶୀଘ୍ର ସଂଗ୍ରହ କରି ନେଲେ ।

× × ×

ଛ'ଟା ବେଳେ ଭୋଜି ଆରମ୍ଭ ହେବ । ଖୁଲ୍‌ଟୁରିନ ଛଟା ବାଜିବା ଆଗରୁ ସେଠାକୁ ଯାଇ ସମସ୍ତ ଆୟୋଜନ ଠିକ କରି ରଖିଲେ । ସାଢ଼େ ଛ'ଟା ବେଳେ ଗୋଟିଏ ବିଷମ ଭୀତିପୂର୍ଣ୍ଣ ବିସ୍ଫୋରଣ ସଙ୍ଗେ ପ୍ରାସାଦ ଭିତ୍ତି କମ୍ପି ଉଠିଲା । ଭୋଜନଶାଳାର ଅଧେ ଉଡ଼ିଗଲା, ପ୍ରାସାଦ କାନ୍ଥଗୁଡ଼ିକ ଚୂନା ହୋଇଗଲା । ପଚିଶ ଜଣ ସଶସ୍ତ୍ର ରକ୍ଷୀ ମଲେ, କିନ୍ତୁ ଜାରଙ୍କ ସୌଭାଗ୍ୟ କ୍ରମେ କିମ୍ବା ବିପ୍ଳବୀଙ୍କ ଦୁର୍ଭାଗ୍ୟରୁ ଜାରଙ୍କର କିଛି କ୍ଷତି ହେଲା ନାହିଁ । ଭୋଜନ କକ୍ଷ ଉଡ଼ାଇ ଦେବା ପାଇଁ ଡାଇନାମାଇଟ ଯଥେଷ୍ଟ ନ ଥିଲା ।

ଖୁଲ୍‌ଟୁରିନ ପଳାଇଲେ; ମାତ୍ର ତାଙ୍କ ବନ୍ଧୁ କାଠକୋସ୍କି ଧରା ପଡ଼ିଲେ । ଯଦିଚ ତାଙ୍କଠାରେ ପ୍ରାସାଦର ମ୍ୟାପଛଡ଼ା ଆଉ କିଛି ପ୍ରମାଣ ଯୋଗ୍ୟ ଜିନିଷ ନ ଥିଲା, ତଥାପି ସେ ମୃତ୍ୟୁ ଦଣ୍ଡରେ ଦଣ୍ଡିତ ହୋଇ ହସି ହସି ଫାଶୀ କାଠରେ ମୁଣ୍ଡ ଝୁଲାଇ ଦେଲେ ।

ଏହି ଘଟଣା ର ଦୁଇ ଦିନ ପରେ ଜାର ସମସ୍ତ ନିହିଲିଷ୍ଟ ଦଳକୁ ଓ ଆନ୍ଦୋଳନକୁ ରକ୍ତ ସ୍ରୋତରେ ବୁଡ଼ାଇ ଦେବାର ପ୍ରତିଶ୍ରୁତିରେ ଆବଦ୍ଧ ଏକ ପୁଲିସ କର୍ମଚାରୀଙ୍କୁ ନିଯୁକ୍ତ କଲେ । ଭେରା ଫିଗ୍‌ନାର

ସ୍ମୋଲେଞ୍ଜେନ୍ସ୍କି ନାମକ ଏକ ତରୁଣ ବିପ୍ଳବୀକୁ ଏ ଗୁପ୍ତଚରେ ହତ୍ୟାର ଭାର ଦେଲେ । ସେ ମୁକ୍ତ ରାଜପଥରେ ଛକି ରହି ସେହି ଗୁପ୍ତଚରକୁ ହତ୍ୟା କଲେ । ସେ ପିସ୍ତଲର ଶେଷ ଗୁଳିଟି ପର୍ଯ୍ୟନ୍ତ ଏହି ଘୃଣିତ ଦେଶଦ୍ରୋହୀ ବୁକୁରେ ଖରଚ କରି ରକ୍ତସ୍ନାତ ହାସ୍ୟ ମୁଖରେ ଧରା ଦେଇଥିଲେ । କର୍ତ୍ତୃପକ୍ଷଙ୍କୁ ଏହି ଭେରାଙ୍କ ସାଥି ସେହି ତରୁଣ ଫାଶି ଦଉଡ଼ିକୁ କଣ୍ଠହାର କରି ବରଣ କରିଥିଲେ ।

ଏହି ତରୁଣର ଫାଶି ହେଲା ଦିନ ପୁଣି ବସିଥିଲା ଭେରାଙ୍କ କାର୍ଯ୍ୟକାରୀ କମିଟିର ଗୁପ୍ତ ଅଧିବେଶନ । ସମସ୍ତଙ୍କ ଅଧର ଓଷ୍ଠ ରକ୍ତାଭ, ଚକ୍ଷୁରେ ଅଗ୍ନିର ସ୍ଫୁଲିଙ୍ଗ—ବିଦ୍ୟୁତ୍ କଣା । ବିପୁଳ ଉତ୍ତେଜନାରେ ପୁଣି ଜାର୍‌ଙ୍କର ମୃତ୍ୟୁ ପ୍ରସ୍ତାବ ଦ୍ୱିତୀୟ ଥର ଗୃହୀତ ହେଲା ।

ନିହିଲିଷ୍ଟ ଆନ୍ଦୋଳନକୁ ଏକ ବ୍ୟାପକ ଭିତ୍ତି ଉପରେ ଗଢ଼ି ତୋଳିବା ପାଇଁ ପୁଣି କେତେକ କର୍ମଠ କର୍ମୀଙ୍କର ପ୍ରୟୋଜନ ହେଲା । ବିପ୍ଳବୀଙ୍କ ଅକ୍ଳାନ୍ତ ଚେଷ୍ଟାଫଳରେ ପୁଣି ମାସକ ଭିତରେ ଆଠ ଜଣରୁ ସତର ଶ ଜଣ ନିହିଲିଷ୍ଟ ଦଳଭୁକ୍ତ ହେଲେ ।

ପୂର୍ବୋକ୍ତ ଘଟଣା ପରେ ଜଶ୍ୱରଙ୍କ ପ୍ରସାଦରେ ଏପରି ସତର୍କ ପ୍ରହରୀ ରହିଲେ ଯେ, ମାଛି ପଶିବା ଅସମ୍ଭବ ହେଲା । ସେଥିପାଇଁ ବିପ୍ଳବୀମାନେ ଗୋଟିଏ ନୂଆ ରାସ୍ତା ଧରିଲେ । ସେମାନେ ଜାଣିଥିଲେ ପ୍ରତି ଗ୍ରୀଷ୍ମକାଳରେ ଜାର ସେଣ୍ଟପିଟର୍ସବର୍ଗକୁ ହାଉଆ ଖାଇ ଯାଆନ୍ତି । ରାଜଧାନୀରୁ ପଦାକୁ ଯିବା ପାଇଁ ମୋଟେ ଗୋଟିଏ ରାସ୍ତା ଥିଲା । ବିପ୍ଳବୀମାନେ ସେହି ରାସ୍ତାରେ ରାଜାଙ୍କର ଦେଶାନ୍ତର ଗମନକୁ ଅପେକ୍ଷା କରି ଛକି ରହିଲେ । ଅଠର ଜଣ ବିପ୍ଳବୀ ରେଲଲାଇନ

କାମରେ ନିଯୁକ୍ତ ହେଲେ । ସମିତିରୁ ସେମାନଙ୍କୁ ଡିନାମାଇଟ ଯୋଗାଣ ଚାଲିଥାଏ । ପୁଣି ଏ ଶାନ୍ତଶିଷ୍ଟ "ଝଣ୍ଡାବାଲା"ମାନେ ରାତିରେ ନିବିଡ଼ ଅନ୍ଧାରରେ ରେଲଲାଇନ ତଳେ ଡ଼ିନାମାଇଟ୍ ଖୁନ୍ଦିବାରେ ଲାଗିଲେ । ଗ୍ରୀଷ୍ମକାଳ ପୂର୍ବରୁ କର୍ମୀମାନେ ସମିତିକୁ ଜଣାଇଲେ ଯେ, ସେମାନଙ୍କ କର୍ମ ସମାପ୍ତ । ବର୍ତ୍ତମାନ କେବଳ ଡିନାମାଇଟ୍ ଫୁଟାଇବା ପାଇଁ ଲୋକ ଦରକାର । ସମିତିଙ୍କ ମତରେ ଚାରି ରାସ୍ତାରେ ଚାରିଜଣଙ୍କ ପରିବର୍ତ୍ତରେ ଗୋଟିଏ ରାସ୍ତାରେ ଚାରିଜଣ କରି ନିଯୁକ୍ତ ରହିଲେ । ସବୁ ଠିକ୍ ହେଲା,କେବଳ ଜାର୍‌ଙ୍କ ଆସିବା ଅପେକ୍ଷାରେ ସମସ୍ତେ ରହିଲେ ।

ଜୁଲାଇ ମାସରେ ଜାର ସେଣ୍ଟପିଟର୍ସବର୍ଗ ଛାଡ଼ିଲେ । କିନ୍ତୁ ଦିନ ଏବଂ ତାରିଖ ଖବର ସାଧାରଣ ପାଇଲେ ନାହିଁ । ଉପରବାଲାମାନ ବିପ୍ଳବୀ 'ଝଣ୍ଡାବାଲା'ଙ୍କୁ ଖବର ଦେଲେ ପନ୍ଦର ମିନିଟ ପରେ ସ୍ୱତନ୍ତ୍ର ରେଲ ଆସୁଅଛି, ଲାଇନ ଯେପରି ଠିକ୍ ରହେ । ଜଣେ ଝଣ୍ଡାବାଲା ରେଲ ଷ୍ଟେସନରେ ସିଗନାଲର୍ ।

ସେ ସହଯୋଗୀଙ୍କୁ ସେଇକ୍ଷଣି ଖବର ଦେଲା । କେତେକ ମିନିଟ ପରେ ସ୍ୱତନ୍ତ୍ର ରେଲ 'ଜଣ୍ଡାବାଲା'ର ଘର ଛାଡ଼ିଲା । ସେହିକ୍ଷଣି ଭୀଷଣ ଶବ୍ଦରେ ବିସ୍ଫୋରଣ ହେଲା । ସଙ୍ଗେ ସଙ୍ଗେ ରେଲ ଶହେଖଣ୍ଡ ହୋଇ ଗୁଣ୍ଡା ହୋଇଗଲା । କିନ୍ତୁ ଏଥର ମଧ୍ୟ ଜାର୍ ମଲେ ନାହିଁ । ସେ ଅଧଘଣ୍ଟା ପରେ ଅକ୍ଷତ ଦେହରେ ଆଉ ଗୋଟିଏ ଟ୍ରେନରେ ଗନ୍ତବ୍ୟ ସ୍ଥାନକୁ ଚାଲିଗଲେ ।

ବିପ୍ଳବୀମାନେ ନିରାଶ ହୋଇ ରାଜଧାନୀକୁ ଫେରି ଆସିଲେ । ସମଗ୍ର ଦେଶରେ ପୁଲିସର ତାଣ୍ଡବ ଲୀଳା ଚାଲିଲା । ହଜାର ହଜାର

ଲୋକଙ୍କୁ ପୁଲିସମାନେ ଗୁପ୍ତ ପରି ଘେରି ରହିଲେ ଓ ଲକ୍ଷ ଲକ୍ଷ ଲୋକଙ୍କୁ ସାମାନ୍ୟ ସନ୍ଦେହରେ ନିତାନ୍ତ ନିର୍ମମ ହୋଇ ସାଇବେରିଆର ନିର୍ଜନ ପ୍ରାନ୍ତରକୁ ନିର୍ବାସନ କଲେ । କିନ୍ତୁ ଲୋକ ଚକ୍ଷୁ ଅନ୍ତରାଳରେ ନିହିଲିଷ୍ଟ ଦଳର ମୁଷ୍ଟିମେୟ ସଭ୍ୟମାନେ ନିଜର ହୃଦୟ ଜାଳି ଧୀରେ ଧୀରେ ଲକ୍ଷ୍ୟ ପଥରେ ଅଭୀଷ୍ଟ ସିଦ୍ଧି ପାଇଁ ଅଗ୍ରସର ହେବାକୁ ଲାଗିଲେ । ସେମାନଙ୍କ ମଧ୍ୟରେ ଭେରା ଓ ପେଟ୍ରୋ ଓ୍ୟାସ୍କିଆନାସ୍କି ବିପ୍ଳବୀ । ସେମାନେ ସମସ୍ତେ ରାଜଧାନୀରେ ରହି ଭେରା ଗୃହରେ ଗୁପ୍ତ ମନ୍ତ୍ରଣାରେ କାଳ କାଟୁଥିଲେ ।

ବିଫଳ ବିପ୍ଳବୀମାନେ କେତେ ଦିନ ଯାଏଁ ନ ଯାଉଣୁ ହିଂସାସ୍ତୁ ପନ୍ଥା ଅବଲମ୍ବନ କଲେ । ବ୍ୟର୍ଥତା ଭିତର ଦେଇ ସାର୍ଥକତାର ମୁହଁ ଦେଖିବେ ଏଇଥିଲା ସେମାନଙ୍କର ପ୍ରତିଜ୍ଞା ।

ପ୍ରତି ସପ୍ତାହରେ ଜାର୍ ଥରେ କି ଦିଥର ପ୍ରଧାନ ପ୍ରଧାନ ରାଜପଥରେ ବୁଲି ଯାନ୍ତି । ଠିକ୍ ହେଲା, ଏ ସମୟରେ ଗୋଟିଏ ପଥ ସୁଡ଼ଙ୍ଗ କରି ଡ଼ିନାମାଇଟ୍‌ରେ ଉଡ଼ାଇ ଦେବାକୁ ହେବ । ସେହି ଅନୁସାରେ ବିପ୍ଳବୀମାନେ ବଡ଼ ରାସ୍ତା ପାଖରେ ଗୋଟିଏ ଖାଲି ଘର ଭଡ଼ା ନେଇ ସେଠାରେ ଲହୁଣୀ ଦୋକାନ ଖୋଲିଲେ । ସେମାନଙ୍କ ଭିତରେ ଜଣେ ହେଲା ଦୋକାନୀ, ଦୁଇଜଣ ହିସାବ ରକ୍ଷକ ଓ ପାଞ୍ଚଜଣ ଗ୍ରାହକ ସାଜିଲେ ।

କେହି ସ୍ୱପ୍ନରେ ସୁଦ୍ଧା ଭାବି ନ ଥିଲେ ଏହି ନିରୀହ ଲୋକ-ମାନେ ଏତେ ବଳିଆର, ଦୁର୍ଦ୍ଦମ ଓ କର୍ମଠ । ଦିନବେଳେ ସେମାନେ ଦୁଧ ଓ ଲହୁଣୀର କାରବାର କରୁଥିଲେ, ରାତି ହେଲେ

ସଡ଼କ ତଳେ ମାଟି ଖୋଳି ଖୋଳି ସୁଡ଼ଙ୍ଗ ତିଆରି କରୁଥିଲେ । ସୁଡ଼ଙ୍ଗରେ ଡିନାମାଇଟ୍ ଭରିବା କାମ ଶେଷ ହେବାକୁ ମାସେ ଲଗିଲା ।

ହଠାତ୍ ଦିନେ ସେମାନେ ଖବର ପାଇଲେ ଯେ ଆଗାମୀ ତେର ତାରିଖ ମାର୍ଚ୍ଚ ମାସ ( ୧୮୮୧ ସାଲ ) ଦିନ ସମ୍ରାଟ ଜାର୍ ସେଇ ବାଟେ ବାହାରକୁ ବୁଲିବାକୁ ଯିବେ ।'

ଗୁରୁବାର ରାତିରେ କାର୍ଯ୍ୟକାରୀ ସମିତିର ଗୋଟିଏ ବିଶେଷ ଅଧିବେଶନ ବସିଲା । ଭେରା କହିଲେ, "ଖାଲି ଡିନାମାଇଟ୍‌ରେ ଜାରଙ୍କୁ ହତ୍ୟା କରିବା ଯଥେଷ୍ଟ ହୋଇ ନ ପାରେ ।" ତେଣୁ ସେ ଆଉ ଗୋଟିଏ ପ୍ରସ୍ତାବ କଲେ ଯେପରି ଜାର୍ ନିଶ୍ଚିତ ମରିବେ, ତାହାର ବନ୍ଦୋବସ୍ତ କରିବାକୁ କହିଲେ ।

ରୁସାକୋ ନାମରେ ଜଣେ ବିପ୍ଳବୀ ଜାରଙ୍କୁ ବୋମା ଫୋପାଡ଼ିବେ ବୋଲି ପ୍ରସ୍ତୁତ ହୋଇ ଦୁଇଶହ ଗଜ ଦୂରରେ ଅପେକ୍ଷା କରିବେ ବୋଲି ସମିତି ଆଦେଶ ଦେଲେ । ଆଉ ଦୁଇ ଶହ ଗଜ ଦୂରରେ ଆଉ ଜଣେ ବୋମା ନେଇ ଅପେକ୍ଷା କରିବା ଠିକ୍ ହେଲା । ଏପରି ଭାବରେ ମିଖାଇଲୋ ଓ ସେଲିଆକ ନାମକ ଦୁଇଜଣ ଲୋକ ତୃତୀୟ ଓ ଚତୁର୍ଥ ରୂପରେ ପ୍ରସ୍ତୁତ ହେଲେ । କିନ୍ତୁ ଶନିବାର ଦିନ ଏକ ଆଶ୍ଚର୍ଯ୍ୟ ଘଟଣା ଘଟିଲା । ଶଭଲଭର ହାତରେ ଧରି ଦଳେ ପୁଲିସ ଆସି ଦୋକାନ ଘର ବନ୍ଦ କରି ଖାନତଲାସ ଆରମ୍ଭ କରି ଦେଲେ । ହୁଏତ କିଏ ବିଶ୍ୱାସ ଘାତକତା କରିଥିଲା କିମ୍ବା କାହାରି ଅସାବଧାନତାରେ ପୁଲିସ ସନ୍ଦେହ ସୂତ୍ର ପାଇ ବୋମା, ଡିନାମାଇଟ୍‌ର ସନ୍ଧାନ ପାଇଲା ।

ଖାନ୍‌ଡଲସବେଳେ ଭେରା ଫିଗ୍‌ନାର ଦୋକାନରେ ଥିଲେ । ସେ ପୁଲିସମାନଙ୍କୁ ଦେଖି ହସି ଦେଇ କହିଲେ, "ଆମେ ତ ସେ ସବୁ ଜିନିଷ ରଖୁ ନାହୁଁ । ବୋମା କି ଡିନାମାଇଟ୍ ବିକ୍ରି ଯେ ଆମେ ପେଟ ପୋଷୁ ନାହୁଁ ଏ ବିଷୟରେ ଆପଣମାନେ ନିଶ୍ଚିନ୍ତ ହୋଇ ପାରନ୍ତି ।" ଶେଷରେ ପୁଲିସମାନଙ୍କୁ ଖୁବ୍ ସନ୍ତୁଷ୍ଟ ଭାବରେ ସ୍ୱୀକାର କରିବାକୁ ହେଲା ଯେ, ଏ ଦୋକାନରେ ଏପରି ଜିନିଷ ରହେ ନାହିଁ । ଯେ କହିଥିଲା ସେ ମିଥ୍ୟାବାଦୀ ।

ରବିବାର ସକାଳ ଦଶଟାବେଳେ ଭେରାଙ୍କ ଘରେ କେତେ ଜଣ ବିପ୍ଳବୀଙ୍କର ଏକ ଜରୁରୀ ସଭା ବସିଲା । ଅନ୍ୟମାନେ ଜାରଙ୍କ ଅପେକ୍ଷାରେ ଦୋକାନଘରେ ଉତ୍କଣ୍ଠିତ ଚିତ୍ତରେ ଅପେକ୍ଷା କରିବାକୁ ଲାଗିଲେ । ପେଟ୍ରୋଭ୍‌ୟାସ୍କି ଆ ଜାରଙ୍କ ଭ୍ରମଣପଥ ସମ୍ବାଦ ପାଇବା ଆଶାରେ ଏପାଖ ସେପାଖ ବୁଲିବାକୁ ଲାଗିଲେ ।

ଶେଷମୁହୂର୍ତ୍ତରେ ପେଟ୍ରୋଭ୍‌ୟାସ୍କି ଆ ଜାଣି ପାରିଲା ଯେ ସେମାନଙ୍କର ସବୁ ଆୟୋଜନ ବ୍ୟର୍ଥ । ଜାର୍‌ଙ୍କ ମତ ବଦଳିଛି । ସେ ପୂର୍ବ ନିର୍ଦ୍ଦିଷ୍ଟ ପଥରେ ନ ଯାଇ ଅନ୍ୟ ପଥରେ ଯିବେ । ରୁଦ୍ଧଶ୍ୱାସରେ ସଙ୍ଗୀମାନଙ୍କ ନିକଟକୁ ଯାଇ ପେଟ୍ରୋଭ୍‌ୟାସିଆ ସେମାନଙ୍କୁ ନୂତନ ପଥକୁ ପଠାଇଦେଲା । ତାହାର ଆଦେଶ ତତ୍‌କ୍ଷଣାତ୍ ପାଳିତ ହେଲା । ପନ୍ଦର ମିନିଟରେ ବିପ୍ଳବୀମାନେ ବୋମା ନେଇ ପ୍ରସ୍ତୁତ ହୋଇ ନୂତନ ପଥରେ ଛିଡ଼ା ହୋଇ ରହିଲେ ।

ସମସ୍ତଙ୍କ ଶେଷରେ ଜାର୍‌ଙ୍କ ଗାଡ଼ି ଆସି ଉପସ୍ଥିତ ହେଲା । ଅଶ୍ୱାରୋହୀ ସଶସ୍ତ୍ର ସେନାମାନେ ସାଥି ସାଥି ଚାଲୁଥିଲେ ଏବଂ ଶତ ଶତ ପ୍ରଜା ଆନନ୍ଦ ଧ୍ୱନି କରି ପାଶ୍ଚାତ୍ ଅନୁଗମନ କରୁଥିଲେ । ରୁଷାକୋ ଜାର୍‌ଙ୍କ ଗାଡ଼ିକୁ ଲକ୍ଷ୍ୟ କରି ବୋମା ଫିଙ୍ଗିଲା, କିନ୍ତୁ

ସେ ଏତେ ଅପ୍ରକୃତିସ୍ଥ ହୋଇ ପଡ଼ିଥିଲେ ଯେ, ବୋମାଟା ତିନିଜଣ ଶରୀର ରକ୍ଷୀଙ୍କୁ ହତ୍ୟା କରି ଗାଡ଼ିର କିଛି ଅଂଶ ଚୂନା କରିବା ଛଡ଼ା ଜାରଙ୍କର କିଛି କ୍ଷତି କଲା ନାହିଁ । ଜାରଙ୍କ ଭାଗ୍ୟ ବଳରୁ ଏଥର ସେ ବଞ୍ଚିଗଲେ ।

ଏକ ଅବର୍ଣ୍ଣନୀୟ ବିଭୀଷିକାରେ ଲୋକ ଭର୍ତ୍ତି ହୋଇଗଲେ । ଯେ ଯେଣେ ପାରିଲେ ପଳାଇଲେ । ସମ୍ରାଟଙ୍କ ଗାଡ଼ି ଚାଳକ ପ୍ରାଣଧରି ପଳାଇଲା । ଗ୍ରୀନ୍ ଇଜ୍କି କିଛିଦୂରରେ ଜାରଙ୍କ ଅପେକ୍ଷାରେ ଛିଡ଼ା ହୋଇଥିଲା । ସେ ଧୀର ଚିତ୍ତରେ ଦୃଢ଼ ହସ୍ତରେ ଜାରଙ୍କୁ ଲକ୍ଷ୍ୟ ରଖି ବୋମା ଫିଙ୍ଗିଲା । ନିମିଷ ମଧ୍ୟରେ ଜାରଙ୍କ ଜୀର୍ଣ୍ଣ ଗାଡ଼ି ଚୂନା ହୋଇଗଲା । ବିରାଟ ରୁଷିଆର ଭାଗ୍ୟଦେବତା ଜାର୍ ମାଂସ ପିଣ୍ଡପରି ରକ୍ତ ସିକ୍ତ ରାସ୍ତାରେ ପଡ଼ି ଗଡ଼ିଲେ । କେତେ ମିନିଟ୍ ପୂର୍ବେ ଯେ ଷୋଳକୋଟି ଲୋକଙ୍କ ଭାଗ୍ୟ ବିଧାତାଥିଲେ, କେତେକ ସେକେଣ୍ଡ ପରେ ତାଙ୍କର ନିର୍ମମ ହତ୍ୟା ପରେ ବିପ୍ଳବୀଙ୍କ ଗୋଟାଏ ଭଯୁବହ ଅଙ୍କରେ ତାଙ୍କର ଯବନିକା ପାତ ହେଲା ।

ରୁସାକୋ, ଗ୍ରୀନ୍ଇଜ୍କି, ସେଲିଆକୋ, ପେଟ୍ରୋଓ୍ୟାସ୍କିଆ ସଙ୍ଗେ ସଙ୍ଗେ ଘଟଣା ସ୍ଥଳରେ ଧରା ପଡ଼ି ଫାଶି ରଙ୍ଗମଞ୍ଚରେ ସେମାନଙ୍କ ଜୀବନ ଦେଇ ଏହି ନାଟକର ମୂଲ୍ୟ ଦେଇଗଲେ । ଆଉ ସମସ୍ତେ ବଞ୍ଚିଗଲେ । ଏପରି ଦୁଇଜଣ ଅସୀମ ସାହସୀ ବିପ୍ଳବୀ ସେଣ୍ଟ୍ ପିଟରସ୍ବର୍ଗର ଏହି ଦୋକାନକୁ ଚଳେଇବାକୁ ଲାଗିଲେ । ବର୍ଷ ଗୋଟିଏ ନିର୍ବିବାଦରେ କଟିଲା । ପରେ ସାମାନ୍ୟ ଏକ ଘଟଣାରେ ଭେରା ଧରା ପଡ଼ିଲେ । ପେଟ୍ରୋପ୍ଳାସ୍କିଆର ଗୃହକର୍ତ୍ତ୍ରୀ ଭେରାଙ୍କୁ ଅନେକ ଦିନରୁ ପେଟ୍ରୋଓ୍ୟାସ୍କିଆ ସଙ୍ଗେ ଦେଖିଥିଲା । ଦିନେ ସେ ରାସ୍ତାରେ ଆସୁଥିବାବେଳେ ପୁଲିସ ହାତରେ ତାଙ୍କୁ ଧରାଇ ଦେଲା ।

ତାଙ୍କ ବିରୁଦ୍ଧରେ କିଛି ପ୍ରମାଣ ନ ଥିଲା । ଏପରି କି ଭେରା ନିଜକୁ ନିହିଲିଷ୍ଟ ବୋଲି ସ୍ୱୀକାର କଲେ ମଧ୍ୟ ପୁଲିସମାନେ ଶତ ଚେଷ୍ଟାରେ ତାଙ୍କୁ କୌଣସି ଅପରାଧରେ ଜଡ଼ିତ କରି ପାରିଲେ ନାହିଁ । ପ୍ରାୟ ଦି'ବର୍ଷ ଧରି ଭେରାଙ୍କ ସମ୍ବନ୍ଧରେ ଜୋର ତଦନ୍ତ ଚାଲିଲା । ଯଦିବା ତଦନ୍ତରେ ତାଙ୍କର ସବୁ କଥା ବାହାରି ପଡ଼ିଲା ତଥାପି ଉପଯୁକ୍ତ ପ୍ରମାଣ ଅଭାବରେ ତାଙ୍କର ଫାଶି ହେଲା ନାହିଁ । ଶେଷରେ ତାଙ୍କୁ ଆଜୀବନ ନିର୍ବାସନ ଦଣ୍ଡ ଦିଆଗଲା । ଦଣ୍ଡ ପୂର୍ବରୁ ତାଙ୍କୁ କୁହାଗଲା, ଯଦି ସେ ନିହିଲିଷ୍ଟଙ୍କ ଗୁପ୍ତକଥା ପ୍ରକାଶ କରି-ଦେବେ, ତେବେ ତାଙ୍କୁ ଛୁଟି ମିଳିବ । କିନ୍ତୁ ସେ ଘୃଣ୍ୟ ବିଶ୍ୱାସ ଘାତକତାର ମୂଲ୍ୟ ଦେଇ ନିଜର ମୁକ୍ତି କିଣିବା ଅପେକ୍ଷା ଯାବ-ଜ୍ଜୀବନ ସାଇବେରିଆର ନିର୍ଜନ ପ୍ରାନ୍ତରରେ ନିଜ ଧମନୀର ରକ୍ତ ଝରେଇଦେବା ଶ୍ରେୟ ମନେ କଲେ । ଦଣ୍ଡଦାତାମାନେ ଭାବିଲେ ନିର୍ବାସନର କଠୋରତା ତାଙ୍କ ପରି କୋମଳାଙ୍ଗୀ ନାରୀର ମାରବତା ଭାଙ୍ଗି ଦେବାକୁ ସକ୍ଷମହେବ । କିନ୍ତୁ ତାଙ୍କର ସେ ଦୁରାଶା ଶେଷ ଯାଏ ଆକାଶ କୁସୁମ ହୋଇ ରହିଲା ।

ସଲସ୍‌ବର୍ଗ ଦୁର୍ଗର ପହରାଦିଆ ରୁଦ୍ଧ ଘରେ ପାଷାଣକାରା ପଛ ପଟେ ସୁଦୀର୍ଘ କୋଡ଼ିଏ ବର୍ଷ କାଳ ଓ ଚିର ତୁଷାରାବୃତ ସାଇବେରିଆ ପ୍ରାନ୍ତରରେ ଦଶବର୍ଷ ନିର୍ବାସନ ଭୋଗି ସ୍ୱେଚ୍ଛାଚାରୀ ଜାର୍ ଦ୍ୱିତୀୟ ଆଲେକଜାଣ୍ଡାରଙ୍କର ପ୍ରାୟ ଅର୍ଦ୍ଧ ଶତାବ୍ଦୀ ରାଜତ୍ୱ ପରେ ଭେରା ଫିଗ୍‌ନାର୍ ବଲସେଭିକ ରୁଷିଆର ନିଭୃତ କକ୍ଷରେ ବସି ନିଜର ଜୀବନ ଲିପି ଲେଖିଛନ୍ତି । ଏହି ବିପ୍ଳବୀନାରୀଙ୍କର ଜୀବନୀ ଚରିତ୍ରମା ।

# କାଉଣ୍ଟେସ ମାର୍କିଏ ଭିକ୍ସ

ବିଶ୍ୱର ସ୍ୱାଧୀନ ନାରୀ ଜାତି ପରି ଆଇରିଶ୍ ବିପ୍ଳବରେ ପିଲଙ୍କ ପାଖରେ ମା', ଭାଇ ପାଖରେ ଭଉଣୀ, ସ୍ୱାମୀ ପାଖରେ ସ୍ତ୍ରୀ ଆସି ଏକପ୍ରାଣ ହୋଇ ଛିଡ଼ା ହୋଇଛନ୍ତି ବୋଲି ଆଜି ଆୟର୍ଲଣ୍ଡ ଜଗତର ଜାତି ସଙ୍ଘରେ ସ୍ଥାନ ପାଇଛି । ସ୍ୱେଚ୍ଛାଚାରୀର ସୀମାହୀନ ଅତ୍ୟାଚାରର ହାତରୁ ତାଙ୍କର ବନ୍ଦିନୀ ମାତାଙ୍କୁ ଛିଙ୍କିଆଣି ଆଇରିଶ୍ ଜାତି ଜଣେଇ ଦେଇଛି ଯେ, ସ୍ୱାଧୀନତା ତାର ଜନ୍ମଗତ ଅଧିକାର । ସେ ବି ମନୁଷ୍ୟ, ଆଇରିଶ୍ ନାରୀ ନିଶ୍ଚିନ୍ତ ଗୃହ କୋଣ ଛାଡ଼ି ବିପ୍ଳବର ଘୂର୍ଣ୍ଣି ବାୟୁରେ ନିଜକୁ ଛାଡ଼ି ଦେଇ ଜଗତ ଆଖିରେ ଆଙ୍ଗୁଳି ଦେଇ ଦେଖାଇଛି, ନାରୀର ହାସ୍ୟରେ କେବଳ ସୁଧା ଧାରା ଝରେ ନାହିଁ; ତହିଁରେ ବିଦ୍ୟୁତର ଜ୍ୱାଳା ବି ଥାଏ । ସେମାନଙ୍କ ହାତରେ କେବଳ କୋମଳ ତୁଳିକା ଶୋଭା ପାଏ ନାହିଁ, ଦରକାର ହେଲେ ଜ୍ୱାଳାମୁଖୀ ଅଗ୍ନିନାଳୀକା ବି ଗର୍ଜି ଉଠେ ।

ଆୟର୍ଲାଣ୍ଡର ଏହି ମୃତ୍ୟୁବିଜୟୀ ନାରୀ ବିପ୍ଳବୀଙ୍କ ମଧ୍ୟରେ କନ୍‌ଷ୍ଟେନ୍‌ସ ମାର୍କିଏ ଭିକ୍‌ସ ଥିଲେ ପ୍ରଧାନ । କିନ୍ତୁ ସର୍ବାପେକ୍ଷା ଆଶ୍ଚର୍ଯ୍ୟର ବିଷୟ ଏହି ଯେ, ମାର୍କିଏଭିକ୍‌ସଙ୍କ ମା ଆଇରିଶ୍ ଝିଅ ହେଲେ ମଧ୍ୟ ଅତ୍ୟନ୍ତ ଆଇରିଶ୍ ବିଦ୍ୱେଷୀ ଓ ଇଂରେଜ ଭକ୍ତ ଥିଲେ । ପ୍ରବାଦ ଅଛି ଯେ, ସେ ଘରର ସବୁ ଘଡ଼ିରେ ଆଇରିଶ୍ ସମୟ ବଦଳାଇ ଦେଇ ଇଂଲଣ୍ଡ ସମୟ ରଖୁଥିଲେ । ଯାହା କିଛି ଇଂରେଜୀ ସବୁ ଭଲ, ଯାହା କିଛି ଆଇରିଶ ସବୁ ମନ୍ଦ । ବାଳିକା କନଷ୍ଟେନ୍‌ସ ଏମିତି ଇଂରେଜୀଭକ୍ତ ମାଆର ଝିଅ ହୋଇ ସୁଦ୍ଧା ପରଦେଶୀ ଶାସକ ଇଂରେଜୀ ଗୁଣଗ୍ରାହୀ ହୋଇ ପାରି ନ ଥିଲେ ।

ଆୟର୍ଲାଣ୍ଡର ପ୍ରାଥମିକ ଶିକ୍ଷାପରେ ସେ ପାରସ୍‌କୁ ଚିତ୍ରବିଦ୍ୟା ଶିକ୍ଷା କରିବାକୁ ଗଲେ । ସେଠାରେ ସେ କାଉଣ୍ଟ ମାର୍କେଭିକ୍‌ସ ନାମକ ଜଣେ ସମ୍ଭ୍ରାନ୍ତ ଯୁବକର ସମ୍ପର୍କରେ ଆସିଥିଲେ । ଅନ୍ତରଙ୍ଗ ଭାବରେ ମିଳାମିଶା ଫଳରେ କ୍ରମେ ସେ ଦୁହିଁଙ୍କ ମଧ୍ୟରେ ଗଭୀର ପ୍ରେମ ଜନ୍ମିଲା । ତା' ଫଳରେ ଚିତ୍ରବିଦ୍ୟା ଶେଷ କରି ଦେଶକୁ ଫେରିଲା ବେଳେ କନ୍‌ଷ୍ଟାନସ୍ କାଉଣ୍ଟଙ୍କୁ ବିବାହ କରିଥିଲେ ।

ଚିରକାଳ ଐଶ୍ୱର୍ଯ୍ୟ ଭିତରେ ବୁଡ଼ି ରହିଲେ ସୁଦ୍ଧା ବିଳାସୀ ନାରୀ ଯେ କୌଣସି ପ୍ରକାର ମହା ଉନ୍ମାଦନାରେ ନିଜର ପ୍ରାଣ ଧରି ମଧ୍ୟ ପଣା ଖେଳି ବସେ । ବିପ୍ଳବୀମାନେ କଠୋର ସନ୍ନ୍ୟାସିମା ଜୀବନକୁ ଉଦ୍ଦେଶ୍ୟବିହୀନ ବୁର୍ଜୁୟା ଜୀବନ ଯାତ୍ରା ଅପେକ୍ଷା ଢେର ବେଶୀ କାମ୍ୟ ମନେ କରେ, ଯାହା କି ସାଧାରଣ ମନୁଷ୍ୟର ଧାରଣାତୀତ ଓ ଅଗୋଚର । ଆଉ ଦଶ ଜଣଙ୍କ ପରି ସହଜ ଜୀବନ ବିପ୍ଳବୀମାନେ ସହି ପାରନ୍ତି ନାହିଁ—ସେମାନେ ଅଶାନ୍ତ । ନିଶ୍ଚିନ୍ତ, ଅଳସ, ଶାନ୍ତିମୟ ଜୀବନ ସେ ସେମାନଙ୍କ ପାଇଁ ନୁହେଁ । ଧୂଳି-ଧୂସରିତ ଜୀବନ-ପଥର ପ୍ରତି ବାଙ୍କରେ ଉଦ୍‌ବେଗ ଉଦ୍ଦାମର ଅଶାନ୍ତ କର୍ମମୟ ଜୀବନ ସେମାନଙ୍କୁ ହାତଠାରି ଡାକେ ସଂକୀର୍ଣ୍ଣ ପରିବାରର ଗଣ୍ଡି ଛାଡ଼ି ବାହାରି ଆସିବାକୁ । ସେଇଥିପାଇଁ ସେମାନେ ବାହାରି ପଡ଼ନ୍ତି ବିଶ୍ୱର ଖୋଲା ଆକାଶ ତଳକୁ; ସେତେବେଳେ ସେମାନଙ୍କର ସାମାନ୍ୟ ପରିବାରଠାରୁ ସେମାନଙ୍କ ନିକଟରେ ବିଶାଳ ମାତୃ-ଭୂମିଟି ଅତି ବଡ଼ ହୋଇ ଦେଖାଦିଏ । ସେଥିପାଇଁ ମରଣର ନିର୍ମମ ବିଭୀଷିକା ମଧ୍ୟରେ ସୁଦ୍ଧା ବିପ୍ଳବୀ ନାରୀ ମାର୍କଏଭିକ୍‌ସ ଅବିଚଳିତ ହୋଇ କହି ପାରିଲା—

"Death and I aretwo sisters
I, the elder and more furious."

୧୯୦୯ ସାଲରୁ ତାଙ୍କର ପ୍ରକୃତ ଜୀବନ ଆରମ୍ଭ । କାଉଣ୍ଟେସ ଭଲ କରି ଜାଣିଥିଲେ ଆୟର୍ଲାଣ୍ଡର ଉଜ୍ଜ୍ୱଳ ଭବିଷ୍ୟତ୍ କେବଳ ନିର୍ଭର କରେ ଆଇରିଶ୍ ଶିଶୁମାନଙ୍କ ଉପରେ ଓ ପ୍ରତ୍ୟେକ କିଶୋର ମାନଙ୍କ ନବ ଉନ୍ମାଦନା ଭିତରେ । ସେଥିପାଇଁ ପ୍ରଥମେ ସେମାନଙ୍କୁ ମନୁଷ୍ୟ କରି ଗଢ଼ିବା କାଉଣ୍ଟେସ୍‌ଙ୍କ ଜୀବନର ମୁଖ୍ୟ କାର୍ଯ୍ୟ ହୋଇ-ଥିଲା । ୧୯୦୯ରେ ପ୍ରଥମେ ସେ ଆଇରିଶ୍ ବାଳଚର ସଂଘ ଗଠନ କଲେ । ଆଇର୍ଲାଣ୍ଡର ଭବିଷ୍ୟତ୍ ଆଶା କିଶୋର ଓ ତରୁଣମାନେ କାଉଣ୍ଟେସ୍‌ଙ୍କୁ ଦେଖି ଭଲ ଭକ୍ତି ଓ ଶ୍ରଦ୍ଧା କରୁଥିଲେ । ସେ ଥିଲେ ଏହି କିଶୋର ଏବଂ ତରୁଣମାନଙ୍କର ପ୍ରିୟପାତ୍ର । କିଶୋର ଦଳଙ୍କୁ ନେଇ ମୁକ୍ତିକାମୀ ଆଇରିଶ୍‌ମାନଙ୍କର ବୀରତ୍ୱ କାହାଣୀ ସେ କହୁ କହୁ କେତେ ରାତିର କୃଷ୍ଣମାୟା ପ୍ରଭାତ ଆଲୋକ ମଧ୍ୟରେ ନିଃଶେଷ ହୋଇ ଯାଇଛି । କାଉଣ୍ଟେସ୍ ସେମାନଙ୍କୁ ଶିଖାଉଥିଲେ କିପରି ସବୁଜ, ଧଳା ଓ କମଳା ରଙ୍ଗର ଜାତୀୟ ପତାକାକୁ ପ୍ରାଣଦେଇ ରକ୍ଷା କରିବାକୁ ହେବ । ସେ ବରାବର କହୁଥିଲେ କୌଣସି ସର୍ବଶ୍ରେଷ୍ଠ ବୀର ପୁରୁଷ ଶତ୍ରୁକୁ ପଶ୍ଚାତ୍ ପ୍ରଦର୍ଶନ କରେ ନାହିଁ କି କେବେ ହେଲେ ମିଥ୍ୟା କହେ ନାହିଁ । ପ୍ରାୟ ସେ କହୁଥିଲେ, ତୁମେମାନେ ସବୁଜ ଦଳ ଆଗେଇ ଯିବାର ଦଳ—ନିତ୍ୟ ନୂତନର ଦଳ ।

ଏହି ମୁକ୍ତି ମନ୍ତ୍ରକୁ କେବଳ ଆଇରିଶ୍ କିଶୋରମାନେ ସେମାନଙ୍କର ପ୍ରାଣର ମନ୍ତ୍ର କରି ରଖି ନ ଥିଲେ; ମାତ୍ର ପ୍ରାଣଦେଇ ଏହାର ସତ୍ୟତା ପ୍ରମାଣିତ କରିଥିଲେ । ଶିଶୁକାଳରୁ ସେମାନଙ୍କ ଅନ୍ତରର ପିଞ୍ଜରରେ ଏହି ମହାମନ୍ତ୍ର ଗୁନ୍ଥିହୋଇ ଯାଇଥିଲା ବୋଲି ଡାନ୍‌ବ୍ରିନ, ଟିରେସି, ମାକମ୍, ହୋଗାନ୍, କ୍ଲାନ୍‌ସି, ଲିଞ୍ଚ, ସେଭେଜ ପ୍ରଭୃତି ଶହିଦ ଯୋଦ୍ଧାମାନେ ମୃତ୍ୟୁର ବିଜ୍ଞାପନ ଲଲାଟରେ

ଧାରଣ କରି ମରଣକୁ ବ୍ୟଙ୍ଗ କରି ପାରିଛନ୍ତି । ସେହିହେତୁ ବାଳକ ଫୋନ୍‌ଲେ ଭଳି ଲେସ୍ଲୀ ଫ୍ରିଷ୍ଟେଟ୍ ସୈନ୍ୟ ଦଳ ହାତରେ ମରି ଯାଇଛନ୍ତି *।

ମାର୍କିଏଭିକ୍‌ସର ପ୍ରଚେଷ୍ଟାରେ ମିଚେଲ, ଏମେଟ, ଫିଟ୍‌ଜେରାଲ୍ଡ଼ ପ୍ରଭୃତି ସହୃଦମାନଙ୍କ ସମୟରୁ ଆଇରିଶ୍ ବାଳକମାନଙ୍କର ଗୁପ୍ତ ସମିତିର ପ୍ରଥମ ପ୍ରଚେଷ୍ଟା ହୁଏ । ଏହି ମୃତ୍ୟୁ ଜୟୀ ବାଳକମାନଙ୍କ ମଧ୍ୟରେ ଶୁକ୍ଳ ବାଳକଦଳଙ୍କର ଜନ୍ମ ସମ୍ଭବତଃ ୧୭୪୫ ଠାରୁ ଆରମ୍ଭ ହୁଏ । ଏମାନେ ଥିଲେ ସର୍ବପ୍ରଧାନ । ଏମାନେ ନିଶୀଥ ଅଭିଯାନରେ ନିଜର ପ୍ରକୃତ ପରିଚୟ ଗୋପନ କରିବା ପାଇଁ ପୋଷାକ ଉପରେ ଧଳା କୁର୍ତ୍ତା ପିନ୍ଧୁଥିଲେ ବୋଲି ସେମାନଙ୍କର ଏପରି ଅଦ୍ଭୁତ ନାମକରଣ ହୋଇଅଛି । ଏମାନଙ୍କର ବିଭିନ୍ନ ଶାଖା ସମିତିର ପୁଣି ବିଭିନ୍ନ ନାମ ଥିଲା ଯଥା—"ଟିପାରିରଣ" "ଲେଭେଲରସ୍" "କର୍କରି" "କର୍କ ବଏଜ"କେଣ୍ଟେନ୍‌ରାଇଟ ପ୍ରତିଦ୍ୱନ୍ଦ୍ୱିତ ସମିତିର ନାମ "ରାଇଟ୍ ବଏଜ" ପ୍ରଭୃତି । ତା ପରେ "ପିପ୍ ଅଫ ଡେ ବଏଜ" ଜନ୍ମ ସମ୍ଭବତଃ ୧୭୭୫, "ହାର୍ଟ ଅଫ୍ ଷ୍ଟିଲ ବଏଜ" ଜନ୍ମ ସମ୍ଭବତଃ ୧୭୮୭; ଏହାପରେ "ରିବନ ବଏଜ" କିଶୋର ବିପ୍ଳବୀମାନଙ୍କର ଜନ୍ମ ହୁଏ । ୧୯୧୩ ସାଲର ଡବଲିନ ଧର୍ମଘଟରେ କାଉଣ୍ଟେସଙ୍କ ଆତ୍ମତ୍ୟାଗ କମ ନୁହେଁ । ପ୍ରତ୍ୟେକ ଦିନ ସକାଳେ ସାଇକେଲ କରି ସେ

---

* ମାର୍ଟିନ ଫୋନ୍‌ଲେ ସଶସ୍ତ୍ର ପ୍ରହରୀମାନଙ୍କ ହାତରୁ ବ୍ରିନ୍ଟେରେସି ପ୍ରଭୃତି ସାହାଯ୍ୟରେ ମୃତ୍ୟୁ ଦଣ୍ଡାଜ୍ଞାପ୍ରାପ୍ତ ହୋଗାନ୍‌କୁ ଉଦ୍ଧାର କରିବା ନିମିତ୍ତ ୧୯୨୧ ଜୁନ ମାସ ଛଅ ତାରିଖରେ ମାଉଣ୍ଟ ଜୟ ଜେଲରେ ତାର ଫାଶୀ ହୁଏ ।

ପଠାଉଥିଲେ ଅସହାୟ କୁଲି ମଜୁରଆଙ୍କ ପାଖକୁ । ପୁଣି ମାତୃ-ସ୍ନେହରେ ନିଜର ହାତ ତିଆରି ଖାଦ୍ୟ ସେମାନଙ୍କ ଭିତରେ ବାଣ୍ଟି ଦେଉଥିଲେ, କିପରି ସେମାନେ ମାଲିକମାନଙ୍କଠାରୁ ମନୁଷ୍ୟୋଚିତ ବ୍ୟବହାର ପାଇବେ, ବିଦେଶୀ କାରଖାନା ଗୁଡ଼ିକ କିପରି ଆଇରିଶ୍ କାରଖାନାରେ କାମ କରିବେ ସେଥିପାଇଁ ପ୍ରବଳ ପ୍ରଚାର ଚଳାଇ ଥିଲେ । କାଉଣ୍ଟେସଙ୍କ କାର୍ଯ୍ୟ ଦକ୍ଷତା ଉପରେ ଦେଶବାସୀଙ୍କର ଅବିଚଳିତ ବିଶ୍ୱାସ ଥିଲା । ସେ ଅସମ୍ଭବକୁ ମଧ୍ୟ ସମ୍ଭବ କରି ପାରନ୍ତି, ଏହା ଥିଲା ଦେଶବାସୀଙ୍କର ଦୃଢ଼ ଧାରଣା ।

ଦେଶର ଆକାଶ ପବନରେ ଯେତେବେଳେ ନିଆଁ ଧରିଛି, ଉନ୍ମତ୍ତ ଆୟର୍ଲଣ୍ଡ ତାର ସମସ୍ତ ଶକ୍ତି ଦେଇ ସ୍ୱେଚ୍ଛାଚାରୀ ଶୋଷକଙ୍କୁ ମୃତ୍ୟୁବାଣ ମାରିବାକୁ ଉଦ୍ୟତ । ଆକାଶ ପବନ ଧ୍ୱନିତ କରି ସେତେବେଳେ ଆଇରିଶ୍ ବିପ୍ଳବୀମାନଙ୍କ ମୁହଁରେ ଗର୍ଜିଛି, "ଯେତେଦିନ ପର୍ଯ୍ୟନ୍ତ ମୋ ଦେଶ ପର ଦେଶର ଅଧୀନତା ପାଶ ଛିନ୍ନ କରି ସମ୍ପୂର୍ଣ୍ଣ ସ୍ୱାଧୀନ ହୋଇ ବିଶ୍ୱ ଦରବାରରେ ମସ୍ତକ ଉତ୍ତୋଳନ କରି ଛିଡ଼ା ହୋଇ ନ ପାରିଛି, ସେତେ ଦିନ ପର୍ଯ୍ୟନ୍ତ ଅତ୍ୟାଚାରୀ ଲୁଣ୍ଠନକାରୀ ବିଦେଶୀ ଶାସକମାନଙ୍କ ସହିତ କୌଣସି ରଫା ନାହିଁ !" ୧୯୧୩ ଅଗଷ୍ଟ ମାସରେ କାଉଣ୍ଟେସ୍ ପ୍ରଚାର କଲେ ଯେ, ଶ୍ରମିକ ନେତା ବୀର ଜିମ୍ ଲାରକିନ୍ ରବିବାର ଦିନ ବାରଟା ବେଳେ ସାଧାରଣ ସଭାରେ ବକ୍ତୃତା କରିବେ । ଲାରକିନ୍ ଅତି ସ୍ପଷ୍ଟବାଦୀ ସ୍ୱାଧୀନତାପ୍ରିୟ ଓ ତେଜସ୍ୱୀ ବକ୍ତା ଥିଲେ । ତାଙ୍କର ବକ୍ତୃତାରେ ଲୋକେ ମୁଗ୍ଧ ଏବଂ ଉତ୍ତେଜିତ ହେଉଥିଲେ; ଏବଂ ବହୁ ଦୂରରୁ ହଜାର ହଜାର ଲୋକ ଲାରକିନ୍‌ଙ୍କର ବକ୍ତୃତା ଶୁଣିବାକୁ ଆସୁଥିଲେ । କାଳେ ତାଙ୍କ ବକ୍ତୃତା ଶୁଣିଲେ ଲୋକେ

ବିଦ୍ରୋହୀ ହୋଇ ଉଠିବେ, ସେଥିପାଇଁ ସରକାର ବକ୍ତୃତାର ପୂର୍ବଦିନ ସେଇ ସଭାକୁ ବେ-ଆଇନ ଘୋଷଣା କରି ଦେଲେ । ଏତିକି କରି ମଧ୍ୟ ସରକାରଙ୍କର ମନ ଶାନ୍ତ ହେଲା ନାହିଁ । ସେ ସଙ୍ଗେ ସଙ୍ଗେ ଗ୍ୟାରିବାଲ୍ଡିଙ୍କୁ ଗିରଫଦାର କରିବାକୁ ୱାରେଣ୍ଟ ବାହାର କଲେ । କିନ୍ତୁ ଗାରିବାଲ୍ଡି ମିଳିଲେ ନାହିଁ । ପୁଲିସ ହଇରାଣ ହୋଇ ଶେଷରେ ହାଲ ଛାଡ଼ିଦେଲା । ଅନେକ ଲୋକ ଭାବିଲେ ଗାରିବାଲ୍ଡି ପୁଲିସ ଗିରଫଦାର ଭୟରେ ପଳାତକ । କିନ୍ତୁ ଯେଉଁମାନେ ତାଙ୍କୁ ଜାଣିଥିଲେ, ସେମାନେ ଅସମ୍ଭବ କଥାରେ ବିଶ୍ୱାସ କଲେ ନାହିଁ । ସେମାନେ ଭଲ କରି ଜାଣିଥିଲେ ଗାରିବାଲ୍ଡି ଖାଣ୍ଟି ଦୁର୍ଦ୍ଦାନ୍ତ—ସେ ଶତ୍ରୁକୁ ଆଲିଙ୍ଗନ କରିପାରନ୍ତି ଓ ମୃତ୍ୟୁ ସଙ୍ଗେ ଲଢ଼ି ପାରନ୍ତି । ତାପରେ ଯେତେବେଳେ କାଉଣ୍ଟେସ୍ ପ୍ରଚାର କରିଛନ୍ତି ଓ ସେ ଅଛନ୍ତି, ସେଥିପାଇଁ ନିଶ୍ଚୟ ସଭା ହେବ । ନିର୍ଦ୍ଦିଷ୍ଟ ଦିନ ସଭା ହେବାର ବହୁ ପୂର୍ବରୁ ଲୋକ ଜମା ହେବାକୁ ଲାଗିଲେ । ସରକାର ସେତେବେଳ ପର୍ଯ୍ୟନ୍ତ କିଛି ଗୋଳମାଳ କରି ନ ଥାନ୍ତି । ସମୟ ଗଡ଼ିଗଲା ; କିନ୍ତୁ ବକ୍ତାର ଚିହ୍ନ ନାହିଁ । ହଜାର ହଜାର ଲୋକ ଉତ୍ସୁକ ଭାବରେ ଗାରିବାଲ୍ଡି ଓ କାଉଣ୍ଟେସ୍‌ଙ୍କୁ ଚାହିଁ ରହିଛନ୍ତି । ଏପରି ସମୟରେ ହଠାତ୍ ଭିଡ଼ ଭାଙ୍ଗି ଖଣ୍ଡିଏ ମଟର ଗାଡ଼ି ପହଞ୍ଚିଲା ଓ କାଉଣ୍ଟେସ୍ ଗୋଟିଏ ଦୀର୍ଘ ଶ୍ମଶ୍ରୁଧାରୀ ପୁରୁଷ ସଙ୍ଗେ ମଟରରୁ ଓହ୍ଲାଇଲେ । ପୁରୁଷଟି ତାଙ୍କ ଟୋପି ଓ କୃତ୍ରିମ ଦାଢ଼ି କାଢ଼ି ବକ୍ତୃତା ମଞ୍ଚ ଉପରକୁ ଉଠି ଛିଡ଼ା ହେଲେ ସଙ୍ଗେ ସଙ୍ଗେ ସହସ୍ର କଣ୍ଠରେ ଆନନ୍ଦ ଧ୍ୱନି ଉଠିଲା—"ଗାରିବାଲ୍ଡି କଥା ରଖିଛନ୍ତି ।" ଏ ଆଡ଼େ ସରକାର ଓ ସମସ୍ତ ସଶସ୍ତ୍ର ବାହିନୀ ମଧ୍ୟ ପ୍ରସ୍ତୁତ ଥିଲେ । ପୁଲିସ ପ୍ରଥମେ ସଭା ବନ୍ଦ କରିବାକୁ କହିବାରୁ ଉନ୍ମତ୍ତ ଶ୍ରୋତାମାନେ ସେ କଥାରେ କାନ ନ ଦେଇ ବସି ରହିଲେ । ଏ ଅନ୍ୟାୟ ଅତ୍ୟାଚାର

ବନା ପ୍ରତିବାଦରେ ସହିବା ପାଇଁ ଜନତା ରାଜି ନ ଥିଲେ । ଦୁଇ ଦଳରୁ ଗୁଳି ଚଳିଲା । ନିରୀହ ଆଇରିଶ ଶ୍ରୋତାମାନଙ୍କ ରକ୍ତରେ ସେ ଦିନ ସଭା ସ୍ଥଳ ରଙ୍ଗ ହୋଇଗଲା । ସମସ୍ତ ଡବଲିନ୍ ସହର ଏହି ସହୀଦ୍‌ମାନଙ୍କ ଶବ ସତ୍କାର ଦିନ ନିସ୍ତବ୍ଧ ରହି ଜନ୍ମଭୂମିର ବୀର ସନ୍ତାନମାନଙ୍କୁ ଶେଷ ସମ୍ମାନ ଦେଖାଇଥିଲେ ।

ହେଲେନା ମେଲୋନି ଥିଲେ କାଉଣ୍ଟେସ୍‌ଙ୍କର ସହକାରିଣୀ । ସେ ମଧ୍ୟ କାଉଣ୍ଟେସଙ୍କ ପରି ଗୃହକୋଣ ଛାଡ଼ି ବିପ୍ଳବର ବେଦୀ ମୂଳରେ ଠିଆ ହୋଇଥିଲେ—ତାହାଙ୍କର ସମସ୍ତ ଶକ୍ତି ଓ ଭକ୍ତି ଦେଇ ଦେଶର ଗୃହହୀନ ହତଭାଗ୍ୟ ଭାଇମାନଙ୍କର ସାହାଯ୍ୟ କରିବାକୁ ।

୧୯୧୧ ସାଲରେ ସମ୍ରାଟ ପଞ୍ଚମ ଜର୍ଜ ଆୟର୍ଲଣ୍ଡ ଯାଇଥିଲେ । ସେ ସମୟରେ ସିବହିଗ୍ ଏବଂ ବିପ୍ଳବୀ ନାମ୍ନୀ ଦୁଇଟି ଦିନ ରାତି ନ ମାନି ଅକ୍ଳାନ୍ତ ପରିଶ୍ରମ କରି ରାଜାଙ୍କ ଅଭ୍ୟର୍ଥନାକୁ ପଣ୍ଡ କରିବା ନିମନ୍ତେ ପ୍ରଚୁର କାର୍ଯ୍ୟ ଚଳାଇଥିଲେ । ପ୍ରତି ପାଚିରରେ ପ୍ଲାକାର୍ଡ଼ ଟାଙ୍ଗି, ପାର୍କମାନଙ୍କରେ ବକ୍ତୃତା ଦେଇ ଦେଶବାସୀଙ୍କ ନିକଟରେ କରୁଣ ଆବେଦନ କରି ଜଣାଇଥିଲେ—"ରାଜାଙ୍କୁ ସମ୍ମାନ ନ ଦେଖାଇ, ଅଭ୍ୟର୍ଥନା ନ କରି, ଦେଖାଅ ଯେ ଆଇରିଶମାନେ ତାଙ୍କ ଉପରେ ହେଉଥିବା ଅତ୍ୟାଚାରକୁ ଓ ଅତ୍ୟାଚାରୀ ଶାସନକର୍ତ୍ତାଙ୍କୁ କେତେ ଘୃଣା କରନ୍ତି ।"

ସ୍ୱଦେଶୀ ରାଜାର ଶାସନ-ଚକ୍ର ତଳେ ରହି ତାଙ୍କର ଜାତୀୟ ପତାକାକୁ ଟେକିବା କମ୍ କଥା ନୁହେ । ଏହାର ଫଳ ମୃତ୍ୟୁ ଦଣ୍ଡ ବା ଯାବଜ୍ଜୀବନ କାରାବାସ । ଏହି ଶାସ୍ତି ଜାଣି ସୁଦ୍ଧା କାଉଣ୍ଟେସ

ବହୁବାର ସାଧାରଣ ସଭାରେ ହଜାର ହଜାର କୌତୂହଳୀ ଦର୍ଶକଙ୍କ ସମ୍ମୁଖରେ ଅମ୍ଳାନ ଚିତ୍ତରେ ବିଦେଶୀ ରାଜାର ଜାତୀୟ ପତାକା ପୋଡ଼ିଛନ୍ତି । ଏତେ ବଡ଼ ଦୁଃସାହସ ସେମାନଙ୍କର ଥିଲା ବୋଲି ଆଜି ଆୟର୍ଲାଣ୍ଡର ଇତିହାସ ପୃଷ୍ଠା ନୂଆ କରି ଲେଖା ହେଉଛି । ଗତ ଆଇରିଶ ବିପ୍ଳବରେ କୋଟିପତି ବ୍ୟାରନ୍ ଓ କାଉଣ୍ଟ୍ କନ୍ୟାମାନଙ୍କଠାରୁ ଆରମ୍ଭ କରି ସାମାନ୍ୟ ଶ୍ରମଜୀବୀ ରମଣୀମାନେ ଆସି ଯୋଗଦେଇଥିଲେ ବୋଲି ତାଙ୍କର ପିଲା, ଭାଇ ଓ ସ୍ୱାମୀ ପ୍ରଭୃତି ଦୁଇଗୁଣ ଶକ୍ତି ପାଇଥିଲେ । ନିଜର ମା' ଭଉଣୀମାନେ ପୁରୁଷମାନଙ୍କର ଅସୀମ ଦୁଃଖର ଭାଗୀଦାର ହୋଇ ପରିପୂର୍ଣ୍ଣ ଆନନ୍ଦରେ ଅକାତରେ ଦେଶ ପାଇଁ ଆତ୍ମାହୁତି ଦେଇ ପାରିଥିଲେ । ମୋଟକଥା, ଜାତୀୟ ସ୍ୱାଧୀନତା ସଂଗ୍ରାମରେ ସ୍ତ୍ରୀଲୋକମାନଙ୍କର ଶକ୍ତି ପୁରୁଷମାନଙ୍କୁ ଯଥେଷ୍ଟ ସାହାଯ୍ୟ ଦେଇଛି । କୁଟିଳ ରାଜନୀତିରେ ମଧ୍ୟ ଆଇରିଶ୍ ରମଣୀ କମ୍ କ୍ଷମତା ଦେଖାଇ ନାହାନ୍ତି । ଆଇରିଶ୍ ମହିଳା ସମିତି (Irish Women's Council) ଏହାର ପ୍ରକୃଷ୍ଟ ପ୍ରମାଣ । ଏହି ମହିଳା ସମିତିର ସଂପୂର୍ଣ୍ଣ ପରିଚାଳନା ଅଧୀନରେ ସେବାସଂଘ (Red Cross) ଓ ବ୍ରତୀ ବାଳିକା ସଂଘ (Girl Guides) ଯେପରି କାର୍ଯ୍ୟ କରନ୍ତି ତାହା ଯେ କୌଣସି ସ୍ୱାଧୀନ ଦେଶର ଗର୍ବର କାରଣ । କେବଳ ଆହତମାନଙ୍କ ସେବା ଓ ବିପନ୍ନର ସାହାଯ୍ୟ ବ୍ୟତିରେକେ, ପ୍ରୟୋଜନ ହେଲେ ଯେଉଁଥିରେ ସେମାନେ ବିପକ୍ଷମାନଙ୍କ ସଙ୍ଗେ ସମାନ କମାଣ ବନ୍ଧୁକର ପ୍ରତ୍ୟୁତ୍ତର ଦେଇ ପାରନ୍ତି, ସେଥିନିମନ୍ତେ ଏହି ସଂଗଠିତ ମହିଳା କର୍ମୀଦଳ କଠିନ ଯୁଦ୍ଧ ବିଦ୍ୟା ମଧ୍ୟ ଆୟତ୍ତ କରିଥିଲେ । ଏହି ବିରାଟ ନାରୀ ସଂଗଠନର ପ୍ରଧାନ ଉଦ୍ୟୋକ୍ତ୍ରୀ ଥିଲେ କାଉଣ୍ଟେସ୍ ମାର୍କିଏଭିକ୍ସ ।

କାଉଣ୍ଟେସ୍ ଓ ତାଙ୍କର ସହକର୍ମିଣୀମାନଙ୍କର ଆଉ ଗୋଟିଏ ଅକ୍ଷୟକୀର୍ତ୍ତି ହେଲା—ସ୍ୱେଚ୍ଛାସେବିକାଦଳ ଗଠନ ଓ ଜାତୀୟ ଭଣ୍ଡାର ପାଇଁ ଅର୍ଥ ସଂଗ୍ରହ। ଟଙ୍କା ନ ହେଲେ ଆଜିକାଲି ଜଗତରେ କୌଣସି କାର୍ଯ୍ୟ ଚଳେ ନାହିଁ, ଚଳିପାରେ ନାହିଁ। ବିଶେଷ କରି ଯଦି ବିପ୍ଳବ ସମୟରେ ଆବଶ୍ୟକୀୟ ଅର୍ଥ ନ ମିଳେ ତେବେ ଅନେକ କାର୍ଯ୍ୟ ପଣ୍ଡ ହୋଇଯାଏ।

ବାରମ୍ବାର ଜେଲ କରି ଶାସକମାନେ କାଉଣ୍ଟେସଙ୍କ ଶରୀରକୁ ପଙ୍ଗୁ କରି ଫୋପାଡ଼ି ଦେଲେ ମଧ୍ୟ ତାଙ୍କର ମନକୁ ବିନ୍ଦୁମାତ୍ର ଦମନ କରି ପାରି ନ ଥିଲେ—ବରଂ ଦିନକୁ ଦିନ ତାହା ଆହୁରି ଦୃଢ଼ ଓ ସବଳ ହୋଇ ଉଠୁଥିଲା। କାଉଣ୍ଟେସଙ୍କୁ ଜୀବନରେ ଅନେକ ଅନ୍ୟାୟ ଅତ୍ୟାଚାରର ସହ୍ୟ କରିବାକୁ ହେଉଥିଲା। କିନ୍ତୁ ଯେତେ ନାରୀ ଭଳି ସେହି ଅତ୍ୟାଚାରକୁ ସ୍ୱୀକାର କରିନେବା ମାନସିକତା କେବେ ତାଙ୍କର ନ ଥିଲା। ୧୯୧୬ ଖ୍ରୀଷ୍ଟାବ୍ଦର ବିପ୍ଳବ ସମୟରେ କାଉଣ୍ଟେସ୍ ଓ ତାଙ୍କର ସଙ୍ଗିନୀ ବହୁ ଆଇରିଶ୍ ରମଣୀମାନେ ଯେ ଅତୁଳନୀୟ ବୀରତ୍ୱ ଦେଖାଇ ଥିଲେ, ତାହା ତରୁଣ ଆୟର୍ଲାଣ୍ଡର ଇତିହାସ ପୃଷ୍ଠାରେ ଉଜ୍ଜ୍ୱଳ ରକ୍ତାକ୍ଷରରେ ଚିରଦିନ ଲେଖା ହୋଇ ରହିଥିବ। ୧୯୧୬ ସାଲର ଏଇ "ଇଷ୍ଟର ବିଦ୍ରୋହ" ବ୍ୟର୍ଥ ହେଲେ ମଧ୍ୟ ଆୟର୍ଲାଣ୍ଡ ସ୍ୱାଧୀନତା ଇତିହାସରେ ଏହା ଏକ ନୂତନ ପରିଚ୍ଛେଦର ସୂଚନା ଦେଇଥିଲା।

ଇଉରୋପୀୟ ପ୍ରଥମ ମହାଯୁଦ୍ଧ ଆରମ୍ଭ ହେବାର ଅବ୍ୟବହିତ ପରେ ପ୍ରିୟର୍ସ, ଟମକ୍ଲାର୍କ, ମ୍ୟାକଡୋନାଗ୍, ପ୍ଲାଙ୍କେଟ୍, କନୋଲି, ଭେଲେରା, ମାର୍କିଏଭିକ୍ସ ପ୍ରଭୃତି ବିପ୍ଳବୀ ନେତା ନେତ୍ରୀମାନଙ୍କ

ଆପ୍ରାଣ ଚେଷ୍ଟାରେ ବିଦ୍ରୋହ ଘୋଷଣା ସ୍ଥିର ହୋଇଗଲା । ଜର୍ମାନୀ ସଙ୍ଗରେ ଚୁକ୍ତି ହେଲା ଯେ, ସେମାନେ ବିଦ୍ରୋହ ଦିନ ଆୟାର୍ଲଣ୍ଡ ଉପକୂଳରେ ଏକ ଜାହାଜ ଅସ୍ତ୍ରଶସ୍ତ୍ର ଓହ୍ଲାଇ ଦେବେ । ଆଇରିଶ୍ ସ୍ୱେଚ୍ଛାସେବକମାନେ ପ୍ରକାଶ୍ୟରେ ସାମରିକ କ୍ରୀଡ଼ା-କୌଶଳାଦି ଶିକ୍ଷା କରିଥିଲେ । ଡବ୍‌ଲିନରେ ସେମାନଙ୍କ ସଂଖ୍ୟା ତିନି ହଜାର ଓ ସମଗ୍ର ଦେଶରେ ସଂଖ୍ୟା ଅଠର ହଜାର ଥିଲା । ରାଇଫଲ୍ ସଂଖ୍ୟା ପଚିଶରୁ କମ ଥିଲା । କିନ୍ତୁ ଏଇ କ୍ଷୁଦ୍ର ଶକ୍ତି ନେଇ ସେମାନେ ଶାସକର ବିରାଟ ଶକ୍ତିର ପ୍ରତିରୋଧ କରିବାକୁ ଛିଡ଼ା ହେଲେ । ପ୍ରଧାନ କର୍ମ କେନ୍ଦ୍ରଠାରୁ ଦେଶର ସମସ୍ତ ଆଇରିଶ୍ ସ୍ୱେଚ୍ଛାସେବକମାନଙ୍କୁ ଆଦେଶ ହେଲା ଯେ, ଅପ୍ରେଲ ତା ୨୩ ରିଖ (୧୯୧୬) ଇଷ୍ଟର ରବିବାର ଦିନ ସବୁଦ ସ୍ୱେଚ୍ଛାସେବକଦଳ ଶୋଭାଯାତ୍ରା କରିବେ ଓ ସାମରିକ କୌଶଳ ଆଦି ପ୍ରଦର୍ଶନ କରାଇବେ । ଏହି ବିଦ୍ରୋହ ବାର୍ତ୍ତା ଏତେ ସହଜ ଓ ସରଳ ଭାବେ ଘୋଷିତ ହେଲା ଯେ, ସରକାରର ମଧ୍ୟ କୌଣସି ସନ୍ଦେହର ଉଦ୍ରେକ ହେଲା ନାହିଁ । ଏପରି କି ବିରୁଦ୍ଧବାଦୀ ବୋଲି ସ୍ୱେଚ୍ଛାସେବକ ସମିତିର ସଭାପତି ମ୍ୟାକନିଲ୍ ମଧ୍ୟ ଏ ବିଷୟରେ କିଛି ଜାଣି ପାରି ନ ଥିଲେ ।

ଏକ ଆଡ଼େ ଦକ୍ଷିଣାଞ୍ଚଳରେ ରାଜାର କେସମେଣ୍ଟ ବନ୍ଦୀ ହେଲେ, କେରି ଉପକୂଳରେ ଅଦୂରରେ ଅସ୍ତ୍ର ବୋଝାଇ ଜର୍ମାନ ଜାହାଜ "ଅଡ୍" ମଧ୍ୟ ଧରା ପଡ଼ିଲା । ସରକାର ତେବେ ସୁଦ୍ଧା ଭାବି ନ ଥିଲେ ଯେ, ସାରା ଦେଶଟା ବିଦ୍ରୋହରେ ଧୂମାୟିତ ହୋଇପଡ଼ିଛି । ଅପ୍ରେଲ ୧୯ ତାରିଖ ବୁଧବାର ମ୍ୟାକନିଲ ଆସନ୍ନ ବିଦ୍ରୋହର ଖବର ଜାଣିବାକୁ ପାଇ ଏକ ପ୍ରତ୍ୟାଦେଶ ଜାରି କଲେ, ଯଦ୍ଦ୍ୱାରା କି ସ୍ୱେଚ୍ଛାସେବକମାନେ ଆଉ କେନ୍ଦ୍ରକୁ ଆସିଲେ ନାହିଁ । ବିଜ୍ଞାପନ

ଦେଖି ବିଦ୍ରୋହୀ ନେତାମାନେ ବିସ୍ମିତ ହେଲେ । ସେମାନେ ଆଉ ଥରେ ନୂତନ ଆଦେଶ ଜାରି କଲେ । କିନ୍ତୁ ସମୟାଭାବରୁ ଅନେକେ ତାହା ପାଇ ପାରିଲେ ନାହିଁ । କାର୍ଯ୍ୟତଃ ସ୍ୱେଚ୍ଛାସେବକମାନଙ୍କ ଉପସ୍ଥିତି ସଂଖ୍ୟା ଅନୁଯାଇ ରହିଲା ଅନୁମାନିକ ପ୍ରାୟ ସାତ ଶହ । ଏହି ମୁଷ୍ଟିମେୟ ସାତଶହ ଯୁବକ କେବଳ ଆତ୍ମବଳି ଦାନ ପାଇଁ ପ୍ରସ୍ତୁତ ହେଲେ । ଏହି ଉନ୍ମାଦନା ଲକ୍ଷ୍ୟ କରି ମିସେସ ପିୟର୍ସ ତାଙ୍କର ପିଲାକୁ କହିଥିଲେ,—"ସେମାନେ ଭଲ କରି ଜାଣନ୍ତି ଯେ, ସେମାନେ ପରାଜିତ ହେବେ, କିନ୍ତୁ ସେମାନେ ଏହା ମଧ୍ୟ ଜାଣନ୍ତି ସେମାନଙ୍କ ପ୍ରାଣ ଦେଲେ ଦେଶର ପ୍ରାଣ ପ୍ରତିଷ୍ଠା ହେବ ।"

ଏପ୍ରେଲ ତା ୨୪ ରିଖ ସୋମବାର ଉପରବେଳା ବିପ୍ଳବୀମାନଙ୍କ ଅଗ୍ନିନାଳିକା ମୁଖରେ ଡବଲିନ୍ ସହର ଆତ୍ମସମର୍ପଣ କଲା । ପ୍ଲାଙ୍କେଟ୍, ଡ଼ି ଭେଲେରା, ପିୟର୍ସ ପ୍ରଭୃତି ବିପ୍ଳବୀ ନେତାମାନଙ୍କ ସଙ୍ଗରେ ମାର୍କିଭିକ୍ସଙ୍କୁ ମଧ୍ୟ ସହରର ଏକ ଅଂଶ ରଖିବାର ଭାର ଦିଆଯାଇଥିଲା । ମୁଷ୍ଟିମେୟ ବିଦ୍ରୋହୀମାନେ ବେଶି ଦିନ ଡବଲିନ ସହର ଆଉ ଶାସକମାନଙ୍କ ହାତରୁ ରକ୍ଷାକରି ପାରିଲେ ନାହିଁ । ଆଇରିଶ ଯୁବକମାନଙ୍କ ରକ୍ତରେ ଡବଲିନ୍ ସହର ରାଜପଥ ଭାସିବାକୁ ଲାଗିଲା । ବନ୍ଦୀ ବିପ୍ଳବୀରେ କାରାଗାର ସବୁ ଭରିଗଲା । ନେତାମାନଙ୍କୁ ଏକକ କରି ଶାସକମାନ ବନ୍ଦୀ କରିବାକୁ ଲାଗିଲେ । କିନ୍ତୁ କାଉଣ୍ଟେସ୍ ଅସୀମ ପରାକ୍ରମରେ ବିପକ୍ଷର ଅସଂଖ୍ୟ ସୁଶିକ୍ଷିତ ସୈନ୍ୟଙ୍କୁ ବହୁଦିନ ପର୍ଯ୍ୟନ୍ତ ପଛକୁ ହଟାଇ ରଖିଥିଲେ । ଶେଷରେ ପରାଜିତ ହୋଇ ସେ ଏକଶତ ନାରୀ ବିପ୍ଳବୀଙ୍କ ସହିତ ବନ୍ଦିନୀ ହେଲେ । ବିଚାରରେ ବିପ୍ଳବୀ ନେତାମାନଙ୍କ ସହିତ ତାଙ୍କର ମଧ୍ୟ

ପ୍ରାଣଦଣ୍ଡ ଆଦେଶ ହେଲା । କିନ୍ତୁ ସେମାନଙ୍କ ମଧ୍ୟରୁ ଅନେକେ ଆଶ୍ଚର୍ଯ୍ୟ କୌଶଳରେ ଜେଲରୁ ପଳାୟନ କଲେ । ଏହି ସମୟରେ ବମ୍ଲଭା ନେତା ଜେଲରୁ ଖସି ପ୍ରାଣ ବଞ୍ଚାଇବା ଲାଗି ଲୁଚି କରି ଆମେରିକା ଚାଲିଗଲେ । ସେଠାରେ ଆମେରିକା ପ୍ରବାସୀ ଆଇରିଶ୍ ମାନଙ୍କଠାରୁ ଅର୍ଥ ସାହାଯ୍ୟ ପାଇ କିଛିଦିନ ପରେ ଦେଶକୁ ଫେରି ଆସିଲେ । ଇତିମଧ୍ୟରେ କଲିନସ, ଡାନବ୍ରୀନ୍ ଓ ଟିରେସିଙ୍କ ନେତୃତ୍ୱରେ ଗରିଲା ଯୁଦ୍ଧ ଆରମ୍ଭ ହୋଇଗଲା । ସମଗ୍ର ଦେଶରେ ସେତେବେଳେ ସେମାନଙ୍କର ତାଣ୍ଡବ ନୃତ୍ୟ ଚାଲିଥାଏ । ବନ୍ଧୁକର ଭୀମ ଗର୍ଜନରେ ସେତେବେଳେ ଦେଶର ଆକାଶ ପାତାଳ କମ୍ପିତ । ଏ ସବୁ କେବଳ ସେମାନଙ୍କର ସାଧାରଣତନ୍ତ୍ରଦଳର ଲୋକଙ୍କ ପାଖକୁ ଆସିବାକୁ ଗୋଟିଏ ରଫାର ନିମିତ୍ତ ହୋଇଥିଲା । ୧୯୨୧ ଖ୍ରୀଷ୍ଟାବ୍ଦ ଜୁନ୍ ୨୪ ତାରିଖରେ ବିଲାତର ପ୍ରଧାନ ମନ୍ତ୍ରୀ ଲଏଡ୍ ଜର୍ଜ ଡ଼ି, ଭେଲେରାଙ୍କ ନିକଟକୁ ଲେଖି ପଠାଇଲେ,—"ଭଲ କଥା, ଆମେ ତମକୁ ସ୍ୱାଧୀନତା ଦେବୁ, କିନ୍ତୁ ଆମର ମାନସମ୍ମାନ ବଜାୟ ରଖିବୁ । ଆମେ ତମର ଗଣତନ୍ତ୍ର ସ୍ୱାଧୀନତାକୁ ସମର୍ଥନ କରିବୁ ନାହିଁ, ମାତ୍ର ସେଇ ଢଙ୍ଗର, ସେଇ ପ୍ରକାରର ରାଜନୀତିକ ସ୍ୱାଧୀନତା ଦେବୁ ।"

ସନ୍ଧି ସର୍ତ୍ତ ନେଇ ଏଥର ଗୋଳ ହେଲା । କାରଣ ଭେଲେରା, ଟେରେସି, ମାର୍କିଏ ଭିକ୍ସ, ମିସେସ୍ ପିୟର୍ସ ପ୍ରଭୃତି ଚାହିଁଲେ ପୂର୍ଣ୍ଣ ସ୍ୱାଧୀନତା—ଆଂଶିକ ନୁହେଁ । କିନ୍ତୁ କଲିନ୍ସ ଓ ଗ୍ରିଫିଥ୍ସ ଆଂଶିକ ସ୍ୱାଧୀନତାରେ ସମ୍ମତ ହେଲେ । କ୍ଷୁବ୍ଧ ଗରିଲା ଯୋଦ୍ଧା-ମାନେ ଓ ପୂର୍ଣ୍ଣ ସ୍ୱାଧୀନତାବାଦୀ ଆଇରିଶ ଯୁବକମାନଙ୍କ ପରି ଆଂଶିକ ସ୍ୱାଧୀନତା ସମ୍ପୂର୍ଣ୍ଣ ଅଗ୍ରାହ୍ୟ କଲେ । ୧୯୨୧ ଛଅ ତାରିଖ ଡିସେମ୍ବର ମାସରେ ଗ୍ରିଫିଥ୍ସ ଓ କାଲିନସ ସନ୍ଧି ସର୍ତ୍ତରେ ସ୍ୱାକ୍ଷର

କଲେ । ସେ ଦିନ ବ୍ରିନ୍, ଲିଯୂମଲିଞ୍ଜ ଓ ସିନୋଗାନ୍ ଭେଲେରି, ଗ୍ରିଇଡ଼ିଥ, ମେଟଲେଜ୍, ବ୍ରୁଘା ଓ ଷ୍ଟେକ୍‌ଙ୍କ ସାଙ୍ଗରେ ଏକ ଯୋଗରେ ଏହି ସର୍ତ୍ତିକୁ ପଦାଘାତ କରି ନବ ଉଦ୍ୟମରେ ଭାବୀ ବିପ୍ଳବ ପାଇଁ ପ୍ରସ୍ତୁତ ହେବାକୁ ଲାଗିଲେ । କାଉଣ୍ଟେସ୍ ମାର୍କିଏ ଭିକ୍‌ସ, ମିସ୍ କମେଲିପଟ୍, ମିସ୍ ମାକସୁଇନି, ମିସେସ୍ ପିୟର୍ସ, ମିସେସ୍ ମେଲୋଗାନ୍ ମିସେସ କ୍ଲାର୍କ, ଡାକ୍ତର ଏଡ଼ିଆ ଇଂଗ୍ଲିସ ପ୍ରଭୃତି ବୀର ନାରୀ ମଧ୍ୟ କଲିନସ୍ ଓ ଗ୍ରୀଫିଥ ଗୃହୀତ ସନ୍ଧି ସର୍ତ୍ତରେ ରାଜି ହୋଇ ପାରିଲେ ନାହିଁ । ସେଥିଯୋଗୁଁ ସେମାନେ ସେମାନଙ୍କର ଶେଷ ଆକାଙ୍କ୍ଷାକୁ ଅପୂର୍ଣ୍ଣ ରଖି ନିଶ୍ଚିନ୍ତ ଗୃହକୋଣକୁ ଫେରି ମଧ୍ୟ ଯାଇ ପାରିଲେ ନାହିଁ । ସେମାନେ ସେମାନଙ୍କର ଦଳକୁ ନେଇ ପୁଣି କାର୍ଯ୍ୟକ୍ଷେତ୍ରକୁ ବାହାରି ପଡ଼ିଲେ । ଦେଖୁ ଦେଖୁ ସେମାନଙ୍କର ଏଇ ନାରୀ ସଂଘର କୋଡ଼ିଏ ହଜାର ବୀର ନାରୀ ସଂଗୃହୀତ ହୋଇଗଲେ ।

ପୁରାତନ ସାଧାରଣ ତନ୍ତ୍ରୀ ସୈନ୍ୟମାନେ ଦୁଇଭାଗରେ ବିଭକ୍ତ ହୋଇଗଲେ । ଦଳେ ଜାତୀୟ ବା ଫ୍ରି ଷ୍ଟେଟର ସୈନ୍ୟ ଓ ଅପର ଦଳ ସାଧାରଣ ତନ୍ତ୍ରର ସୈନ୍ୟ । ବ୍ରିଟିଶ ସେନା ବେଗାରିସ ବସ ଓ ଓ୍ୱେଲିଙ୍ଗଟନ ସେନାନିବାସ ଫ୍ରି ଷ୍ଟେଟ ସୈନ୍ୟଦଳ ହାତକୁ ଛାଡ଼ିଦେଲେ । ସାଧାରଣ ତନ୍ତ୍ରଦଳ ସହରର ଗୃହଗୁଡ଼ା ବିଚାରଗୃହ ଦଖଲ କରି ଦୁର୍ଗାଗାରରେ ସେମାନଙ୍କ ପ୍ରଧାନ କର୍ମକ୍ଷେତ୍ର ପ୍ରତିଷ୍ଠିତ କଲେ । ଦେଶର ସବୁଠି ଦୁଇ ଦଳ ମଧ୍ୟରେ ଏପରି ଭାଗ ବଣ୍ଟା ଆଉ କାର୍ଯ୍ୟ କାର୍ଯ୍ୟରେ ଗୃହ ବିବାଦ ଆରମ୍ଭ ହେଲା । ସେହି ଯଜ୍ଞପୀଠରେ ପୂର୍ଣ୍ଣ ସ୍ୱାଧୀନତା ପ୍ରୟାସୀ ଡନଲେସୀ, କେଭି-କୋଲି, ସ୍ତାର୍କ-ବ୍ରେନ୍, ରେଭିଓ କନରି, ମିଲେସ୍, ବ୍ୟାରେଟ, ମ୍ୟାକାଲଭି ବ୍ରିଇଲଡାରସ ପ୍ରଭୃତି ବହୁ ବୀର ଯୁବକ ଆତ୍ମାହୁତି ଦେଲେ । ସାଧାରଣତନ୍ତ୍ରୀଦଳ

ମଧ୍ୟ ଏହି ସବୁ ଗୁପ୍ତହତ୍ୟାର ପ୍ରତ୍ୟୁତ୍ତର ଦେବାପାଇଁ ବିନ୍ଦୁମାତ୍ର ଦ୍ୱିଧା କଲେ ନାହିଁ । ମାଇକାଲ, କଲନସ, ହ୍ୱିଗିସେର ପ୍ରାଣ ନେଇ ସେମାନେ ମୃତାତ୍ମାମାନଙ୍କର ତର୍ପଣ କରିଥିଲେ । ଏ ଅକାରଣ ଗୃହଯୁଦ୍ଧରେ ମର୍ମାନ୍ତିକ ଦୁଃଖ ଓ ଉତ୍ତେଜନାରେ ମାର୍କଏ ଭିକ୍‌ସଙ୍କ ଜୀବନ ବିଷମୟ ହୋଇ ଉଠିଲା । ୧୯୨୭ ଖ୍ରୀଷ୍ଟାବ୍ଦ ଜୁଲାଇ ମାସରେ ସେ ଅତୃପ୍ତିର ନିଆଁ ହୃଦୟରେ ରଖି ଦେହତ୍ୟାଗ କଲେ ।

ମାର୍କଏ ଭିକ୍‌ସଙ୍କ କଥା କହିବାକୁ ଯାଇ । ବାରମ୍ବାର ମନେ ପଡ଼ୁଛି ଜାଗାୟ ସ୍ୱାଧୀନତା ସଂଗ୍ରାମରେ ଆଇରିଶ୍ ରମଣୀମାନେ ଯେ ଶକ୍ତି ଓ ସାହସ ଏବଂ ଦକ୍ଷତା ଦେଖାଇଛନ୍ତି, ନକ୍ତ ଓଜନରେ ତାହା ମପାଯାଇ ପାରିବ ନାହିଁ । ନିଶ୍ଚିନ୍ତରେ ଗୃହକୋଣରେ ବସି ଦାୟିତ୍ୱ କାନ୍ଧରେ ନ ନେଇ ସେମାନେ କେବଳ ନିରୀହା ଅବଳା ହୋଇ ରହି ନ ଥିଲେ—ମନୁଷ୍ୟ ମଧ୍ୟ ହୋଇଥିଲେ । ପୁରୁଷ ପାଖରେ ନାରୀ ଆସି ଛିଡ଼ା ହୋଇ ରହିଥିଲା ବୋଲି ଆଜି ରୁସିଆ ସ୍ୱାଧୀନ, ଚୀନ୍ ସ୍ୱାଧୀନ, ତୁରସ୍କ ସ୍ୱାଧୀନ, ଆୟର୍ଲାଣ୍ଡ ସ୍ୱାଧୀନ । ଏପରି କି ମିଶର ପରି ପୁରୁଣା ଅନୁନ୍ନତ ଦେଶ ମଧ୍ୟ ସ୍ୱାଧୀନ ହେବାକୁ ଯାଉଛି ।

---

# ହାଲଦେ ହାନୁନ୍

ତୁରସ୍କର ନବଜନ୍ମ ଦେଇଛନ୍ତି ତୁର୍କୀର ନାରୀ । କବି ଯଥାର୍ଥରେ କହିଛନ୍ତି ଯେ, ଗୋଟିଏ ଜାତିର ମାତୃଶକ୍ତି ନ ଜାଗିଲେ କଦାପି ସେହି ଜାତିର ପ୍ରାଣ ପ୍ରତିଷ୍ଠା ହୋଇପାରେ ନାହିଁ । ଜାତିର ଭବିଷ୍ୟତ୍ ନିର୍ଭର କରେ ସେହି ଜାତିର ମାତୃଶକ୍ତି ଉପରେ । ତୁର୍କୀ ନାରୀ ଯେଉଁଦିନ ଯୁଗ ଯୁଗ ଧରି ଗଠିତ "ଅବଳାଯତନ"ର ବିରାଟ ପ୍ରାଚୀର ଭାଙ୍ଗି ଦେଇ, ବୁର୍ଖା ଆଡୁଆଳ ଫିଙ୍ଗି ଉଦାର ଉନ୍ମୁକ୍ତ ରାଜପଥ ମଧ୍ୟରେ ଆସି ଛିଡ଼ା ହେଲେ, ସେହିଦିନ ଅଲକ୍ଷ୍ୟରେ ଜାତିର ନବ ଜାଗ୍ରତିର ବିଜୟ ଶଙ୍ଖ ବାଜି ଉଠିଲା ।

ହାଲଦେ ଅଦିବା ହାନୁନ୍ ହେଲେ ତୁର୍କୀର ନବ୍ୟ ନାରୀ ସଂପ୍ରଦାୟର ଜନ୍ମଦାତ୍ରୀ । ପାଶ୍ଚାତ୍ୟ ଦେଶମାନଙ୍କରେ ସେ ତୁରସ୍କର 'ଜୁଆନ ଅଫ୍ ଆର୍କ' ଭଳି ପ୍ରସିଦ୍ଧି ଲାଭ କରିଅଛନ୍ତି, କାରଣ ଜାତିର ପୁନରୁତ୍‌ଥାନରେ ତାଙ୍କର ଦାନ ଅନେକ । ତୁରସ୍କର ସ୍ୱାଧୀନତା ଆନ୍ଦୋଳନର ଜନ୍ମଦାତା କେମାଲ ପାଶାଙ୍କର ସେ ଜଣେ ପ୍ରଧାନ ସହକର୍ମିଣୀ । ରାଜ୍ୟ ସମ୍ବନ୍ଧୀୟ ପ୍ରତ୍ୟେକ ଗୁରୁତର ବିଷୟରେ ମଧ୍ୟ କେମାଲ ତାଙ୍କ ସହିତ ପରାମର୍ଶ କରନ୍ତି । ସେ ପ୍ରଥମେ ଜାତିକୁ ଶୁଣାଇଲେ — ତରୁଣର ରୁଦ୍ର ଶକ୍ତି ସହିତରେ ତରୁଣୀର ସଂଗଠନ ଶକ୍ତି ସଂଯୋଜିତ ନ ହେଲେ ବର୍ତ୍ତମାନ ତୁରସ୍କର ସୌଧ ରଚନା ହୋଇ ପାରିବ ନାହିଁ ।

ହାନୁନ୍‌ଙ୍କ ବାପା ଥିଲେ ରାଜ୍ୟଚ୍ୟୁତ ସୁଲତାନ ଅବଦୁଲ ହମିଦଙ୍କର କୋଷାଧକ୍ଷ । ସେ ଉଦାର ମତର ଲୋକ ଥିବାରୁ ତୁରସ୍କର ପୁରୁଣାକାଳର କୁସଂସ୍କାର ଭାଙ୍ଗି ନିଜର ଝିଅକୁ ପାଶ୍ଚାତ୍ୟ ଶିକ୍ଷାରେ ଶିକ୍ଷିତା କରିବାକୁ ତିଳେ ମାତ୍ର କୁଣ୍ଠିତ ହୋଇ ନ ଥିଲେ । କାରଣ ସେ ଜାଣିଥିଲେ ଓ ବିଶ୍ୱାସ କରୁଥିଲେ ଯେ, ପ୍ରତ୍ୟେକ ମନୁଷ୍ୟର ସ୍ୱାଧୀନ ଚିନ୍ତା ଓ ଇଚ୍ଛା ବଳରେ ଏପରି ଗୋଟିଏ ଜିନିଷ ଅଛି ଯାହାକୁ ସେ ରୁଦ୍ଧ କରିଦେଲେ କଦାପି ତାର ମଙ୍ଗଳ ହୋଇ ପାରେ ନା । ସେଥିପାଇଁ ହାନୁନ୍‌ଙ୍କ ସ୍ୱାଧୀନ ଇଚ୍ଛାର ବିରୋଧିତା କରିବା ଦୂରେ ଥାଉ ସେ ତାକୁ ଚିରଦିନ ସେଥିରେ ଉତ୍ସାହ ଦେଇ ଆସି ଅଛନ୍ତି । ଫଳରେ ପ୍ରାଥମିକ ଶିକ୍ଷା ପରେ ଇସ୍ତାନବୁଲର ମାର୍କିନ କଲେଜରେ ସେ ପ୍ରବେଶ କଲେ । ମାତ୍ର ଅଠର ବର୍ଷ ବୟସରେ ସେ କଲେଜରେ ବି. ଏ. ଡିଗ୍ରୀ ପାଇଲେ । ଛାତ୍ରୀ ଅବସ୍ଥାରେ ସେ ସାଲି ଜେକମ୍ ନାମକ ଯୁବକଙ୍କ ପ୍ରତି ଆକୃଷ୍ଟ ହୋଇଥିଲେ । କ୍ରମେ ପରସ୍ପରଙ୍କ ଏହି ଅନୁରାଗ ପ୍ରେମରେ ପରିଣତ ହେଲା । ବି. ଏ. ପାଶ କରି ସାରିବା ପରେ ହାନୁନ୍ ଜେକମଙ୍କୁ ବିବାହ କଲେ ।

ବଲକାନ୍ ଯୁଦ୍ଧ ସମୟରେ ଜନସାଧାରଣଙ୍କର ଇତର କୁତ୍ସା ଓ ଅକାରଣ ସମାଲୋଚନାରେ ବିନ୍ଦୁ ମାତ୍ର କର୍ଣ୍ଣପାତ ନ କରି ହାନୁନ୍ ଆହତମାନଙ୍କର ସେବା ପାଇଁ ଗୋଟିଏ ନାରୀସେବା ସମିତି ପ୍ରତିଷ୍ଠା କରିଥିଲେ । ଏହା ପୂର୍ବେ ତୁର୍କୀ ନାରୀ ବାହାରର ପୁରୁଷଙ୍କ ସେବା କରିବା ଦୂରେ ଥାଉ ପର୍ଦ୍ଦା ବାହାରକୁ ଆସିବାକୁ କେବେ ସାହସ କରୁ ନ ଥିଲେ । ସୁଲତାନ ଅବଦୁଲ ହମିଦ ହାନୁନ୍‌ଙ୍କର ଏଇ ସ୍ୱେଚ୍ଛାଚାରିହେତୁ କ୍ରୋଧରେ ଉନ୍ମତ୍ତ ହୋଇ ଉଠିଲେ । ସେ ତତ୍‌କ୍ଷଣାତ୍ ଏଇ ଦୁଃସାହସିକା ନାରୀକୁ ପର୍ଦ୍ଦାର

ଅବରୋଧକୁ ଫେରି ଯିବାକୁ ଆଦେଶ ଦେଲେ । କିନ୍ତୁ ହାମୁନ୍ ଝୁଙ୍କି ନାହିଁ ନ ଥିଲେ; ସେ ନିର୍ଭୀକ କଣ୍ଠରେ ଜବାବ ଦେଲେ ଯେ, ଭଗବାନଙ୍କ ଛଡ଼ା ସେ ଆଉ କାହାରିକୁ ଭୟ କରନ୍ତି ନାହିଁ ଏବଂ ସେ ନିଜେ ଯେଉଁଟାକୁ ସତ୍ୟ ବୋଲି ମନେ କରିବେ ତାହା ପ୍ରାଣପଣ ଶକ୍ତି ଦେଇ ରକ୍ଷା କରିବେ ।

ବିପ୍ଳବୀ ନବ୍ୟ ତୁର୍କୀ ସଂଘ ରକ୍ଷଣଶୀଳ ଓ ସ୍ୱେଚ୍ଛାଚାରୀ ସୁଲତାନଙ୍କୁ ଉଚ୍ଛେଦ କରି ଯେତେବେଳେ ରାଷ୍ଟ୍ର ବ୍ୟବସ୍ଥା ସଂସ୍କାରରେ ବ୍ୟସ୍ତ, ଠିକ୍ ସେହି ସମୟରେ ଇଟାଲି ତୁର୍କୀର ଦୂରସ୍ଥ ରାଜ୍ୟ ତ୍ରିପୋଲି ଆକ୍ରମଣ କରି ଦଖଲ କରି ନେଲା । ତାର ଧକ୍କା ସରୁ ନ ସରୁଣୁ ତୁର୍କୀର ପ୍ରତିବେଶୀ ରାଜ୍ୟଗୁଡ଼ିକ ଭୂତପୂର୍ବ ବିଜେତା ବିରୁଦ୍ଧରେ ଦଳବଦ୍ଧ ହୋଇ ଯୁଦ୍ଧ ଘୋଷଣା କଲେ । ଏହି ଆକସ୍ମିକ ଆକ୍ରମଣରେ ହତଭମ୍ଭ ହୋଇ ତୁର୍କୀ କ୍ରମାଗତ ପରାଜିତ ହେବାକୁ ଲଗିଲା । ବାରମ୍ବାର ପରାଜୟରେ ତୁର୍କୀମାନେ ଆତ୍ମ-ପ୍ରତ୍ୟୟ ହରାଇ ହତାଶ ହୋଇ ପଡ଼ିଲେ । ସେମାନେ ଯେ ଇଉରୋପ ବିଜୟୀ ତୁର୍କୀମାନଙ୍କର ବଂଶଧର, ସେମାନଙ୍କର ବୀରତ୍ୱ ଓ ବିଜୟର ଉତ୍ତରାଧିକାର ସାମାନ୍ୟ ନୁହେଁ, ତାହା ସେମାନେ ଏକାବେଳକେ ଭୁଲିଗଲେ । ତୁର୍କୀ ନାମରେ ପରିଚୟ ଦେଇ ସେମାନଙ୍କ ଦେହର ପ୍ରତ୍ୟେକ ରକ୍ତକଣିକା ଜାତୀୟ ଗୌରବରେ ନାଚି ଉଠେ ନାହିଁ । ଦେଶର ତରୁଣମାନଙ୍କର ଯେତେବେଳେ ଏହିପରି ଅସହାୟ ଅବସ୍ଥା, ସେତେବେଳେ ତୁର୍କୀର ଗୌରବ ରକ୍ଷାର ଭାର ନେଇ ପୁରୁଷ ମାନଙ୍କ ପାଖରେ ଆସି ଛିଡ଼ା ହେଲେ ନବ୍ୟ ତୁର୍କୀର ନାରୀସମ୍ପ୍ରଦାୟ । ସେମାନେ "ହାରେମ" ଅନ୍ତଃପୁରର ଗଣ୍ଡି ଏତେକାଳ କୁସଂସ୍କାର ମୁହୂର୍ତ୍ତରେ ଛିନ୍ନ କରି ଓଢ଼ଣା କାଢ଼ି ତୁରସ୍କର ଜାତୀୟ ଜୀବନରେ ଏକ ନୂତନ ପ୍ରାଣର ସ୍ପନ୍ଦନ ସୃଷ୍ଟି କଲେ ।

ଏଡ୍ରେନର ନିରୀହ ପ୍ରଜାବର୍ଗଙ୍କ ଉପରେ ଗ୍ରୀକ୍ ସୈନ୍ୟମାନଙ୍କ ପୈଶାଚିକ ବ୍ୟବହାର ଦେଖି ହାନୁନ୍ ଘୋର ବିପ୍ଳବୀ ହୋଇ-ଉଠିଲେ । କନଷ୍ଟାଣ୍ଟିନୋପଲ୍ ବିଶ୍ୱବିଦ୍ୟାଳୟର ମହିଳା ସଭାରେ ହାନୁନ୍‌ଙ୍କର ଅଗ୍ନିମୟୀ ବାଣୀରେ ସାରା ନାରୀ ଜାତିର ରୁଦ୍ଧ ତୁଷାରିତ ବକ୍ଷରେ ଯେ ଅଗ୍ନି ସେଦିନ ପୂର୍ଣ୍ଣ ଶିଖାରେ ଜଳି ଉଠିଥିଲା, ସେଥିରେ ତୁର୍କୀର ସବୁ ହୀନତା, ସବୁ କାଳିମା ଓ ଜଡ଼ତା ନିଃଶେଷ ହୋଇ ତରଳି ଯାଇଥିଲା । ସେ କହିଥିଲେ, "ଆମ୍ଭମାନଙ୍କର ଅସ୍ତ୍ର ଶସ୍ତ୍ର ନ ଥାଉ । ମୁଁ ଚାହେଁ କେବଳ ପ୍ରବଳ ଦେଶପ୍ରେମୀ ନରନାରୀ, ଶିଶୁ ବୃଦ୍ଧ ଏକ ପ୍ରାଣରେ ମିଳିତ ହୋଇ ଏକା ସାଙ୍ଗରେ ଛିଡ଼ାହୋଇ ଶତ୍ରୁର ଗତିରୋଧ କରନ୍ତୁ । ଜଗତରେ ଏପରି କୌଣସି ନୃଶଂସ ଶକ୍ତିଶାଳୀ ଶତ୍ରୁ ନାହିଁ ଯେ, ସେ ଆମକୁ ପରାସ୍ତ କରି ପାରିବ ।" ନିଜର ଦେଶ ଓ ଜାତି ପ୍ରତି ପ୍ରଗାଢ଼ ଅନୁରାଗ ଗୋଟିଏ ଜାତିକୁ ଅପର ଜାତି କବଳରୁ ବଞ୍ଚାଇ ରଖେ । ଏହି ଅନୁରାଗହିଁ ଅତୀତ କାଳରେ ଜାତିକୁ ଏତେ ବଡ଼ ଓ ଏତେ ଦୁର୍ଦ୍ଧର୍ଷ କରିଥିଲା ଯେ, ଏବେ ଜାତି ଚାହେଁ କେବଳ ସେହି ଅନୁରାଗ । ତା'ର ଅଭାବରେ ଆମ୍ଭମାନଙ୍କର ଏ ଦୁର୍ଦ୍ଦଶା । ଆମ୍ଭମାନଙ୍କର ଗଉଡ଼ ପ୍ରଜା ବୁଲ୍‌ଗେରିଆନ୍‌ମାନେ ଆଜି ପର୍ଯ୍ୟନ୍ତ ଆମ୍ଭମାନଙ୍କୁ ଦୁଧ ଯୋଗାଉଥିଲେ । କିନ୍ତୁ ଦେଶାନୁରାଗ ଯୋଗୁଁ ଆଜି ସେମାନେ ଆମ୍ଭମାନଙ୍କର ବିଜେତା, ସମଗ୍ର ଜଗତରେ ସେମାନେ ଗୌରବାନ୍ୱିତ । ଆମ୍ଭମାନଙ୍କର ହତାଶ ହେବାର କାରଣ ନାହିଁ । ଏହି ଫ୍ରାନସ୍ ପଚିଶ ବର୍ଷ ପୂର୍ବେ ଜର୍ମାନୀ ହାତରେ କିପରି ଅପମାନିତ ହୋଇ ନ ଥିଲା । କିନ୍ତୁ ପଚିଶ ବର୍ଷ ପରେ ସେ ତାର ପୂର୍ବ ଗୌରବରେ ପ୍ରତିଷ୍ଠିତ ହୋଇଛି । ଗ୍ରୀସ୍ ଦିନେ ତୁର୍କୀର ଅଧୀନ ଥିଲା । ବର୍ତ୍ତମାନ ଗ୍ରୀସ୍ ତୁର୍କୀର ପ୍ରତିଦ୍ୱନ୍ଦୀ । ଆମ୍ଭେମାନେ ତୁର୍କୀର ସନ୍ତାନମାନଙ୍କ ଅଙ୍ଗରେ ସ୍ତନ୍ୟଦୁଗ୍ଧ ସଙ୍ଗେ ଦେଶାନୁରାଗ

ସଞ୍ଚାରିତ କରିଦେବୁ । ଏହା ହେବ ଆମ୍ଭମାନଙ୍କର ବ୍ରତ । କାପୁରୁଷ ସନ୍ତାନ ଆମ୍ଭମାନଙ୍କ ଦେଶରେ ରହିବେ ନାହିଁ । ତୁର୍କୀ ଜାତିକୁ ଆମ୍ଭେମାନେ ମରିବାକୁ ଦେବୁ ନାହିଁ । ଆଶା ଆମ୍ଭମାନଙ୍କୁ ବଳଦାନ କରୁ । ଆଶାର ସଞ୍ଜୀବନୀ ମନ୍ତ୍ର ଆମ୍ଭମାନଙ୍କୁ ଉଦ୍‌ବୋଧିତ କରି ନରନାରୀଙ୍କ ସେବାରେ ନିଯୁକ୍ତ କରୁ । ସେତେବେଳେ କୌଣସି ବାଧା ବୋଲି ବୋଧ ହେବ ନାହିଁ, କୌଣସି ତ୍ୟାଗ କ୍ଳେଶକର ହେବ ନାହିଁ । ମୃତ୍ୟୁ ଡାକଲେ ଯେପରି ଆମ୍ଭେମାନେ କହି ପାରିବୁ, "ଆମର ଦେଶ ପାଇଁ ରାତିରେ ଶୋଇ ନାହୁଁ, ଦିନରେ ବିଶ୍ରାମ ନେଇ ନାହୁଁ ।" ସେତେବେଳେ ଯାଇ ଆମର ଦେଶ ପୃଥିବୀର ସମସ୍ତ ସ୍ୱାଧୀନ ଜାତିମାନଙ୍କ ପାଖରେ ମଥା ଟେକି ଛିଡ଼ା ହୋଇ ପାରିବ । ସମସ୍ତ ପୃଥିବୀ ଆମ୍ଭମାନଙ୍କୁ ଗୌରବର ଆସନ ଛାଡ଼ିଦେବ ।

ହାଲୁନ୍ ଏକାଧାରରେ କବି, ଲେଖିକା, ଶିକ୍ଷକ କୃଷ୍ଟ ରାଜନୈତିକ ଓ ସୈନିକ ଥିଲେ । ତାଙ୍କ ଲିଖିତ ବହୁ ଉପନ୍ୟାସ ଛଡ଼ା ତାଙ୍କର ଖଣ୍ଡିଏ ଜୀବନ ସ୍ମୃତି ମଧ୍ୟ ଅଛି । ଏହି ବହି ଖଣ୍ଡିକ ବ୍ୟକ୍ତିଗତ ସ୍ମୃତି ବା ଜୀବନୀ କେବଳ ନୁହେଁ, ତୁରସ୍କର ଗତ ଅର୍ଦ୍ଧ ଶତାବ୍ଦୀର ସାମାଜିକ ଓ ରାଜନୈତିକ ଇତିହାସ କହିବାକୁ ହେବ । ୧୯୦୮ ଖ୍ରୀଷ୍ଟାବ୍ଦର ବିପ୍ଳବ ସମୟରେ ହାଲୁନ୍‌ଙ୍କ ସମ୍ପାଦିତ ନବ ତୁର୍କୀର ମୁଖପତ୍ର "ତାନିନେ"ର ପ୍ରତ୍ୟେକ ପତ୍ର ମୃତ ଜାତିର ଅନ୍ତରରେ ନବ ପ୍ରେରଣା ସଞ୍ଚାର କରିଥିଲା । ସ୍ୱେଚ୍ଛାଚାରୀ ଶାସକବର୍ଗ ସେଥିପାଇଁ ଏହି ବିପ୍ଳବୀ ନାରୀର ମୁଣ୍ଡ ନେବା ପାଇଁ ପୁରସ୍କାର ଘୋଷଣା କରୁଥିଲେ । ସେଥିପାଇଁ ଛଦ୍ମବେଶରେ ହାଲୁନ୍ ସେ ଦେଶ ଛାଡ଼ି ଆଙ୍ଗୋରାରେ ଉପସ୍ଥିତ ହେଲେ । ସେଠାରେ ବିପ୍ଳବ କେନ୍ଦ୍ରରେ

ମଧ୍ୟ ବେଶୀଦିନ ନିଶ୍ଚିନ୍ତ ହୋଇ ରହି ପାରିଲେ ନାହିଁ । ସେଠାରେ ମଧ୍ୟ ଗୁପ୍ତଚରର ଅତ୍ୟାଚାରରେ ପୀଡ଼ିତ ହୋଇ ଇଂଲଣ୍ଡକୁ ଚାଲିଗଲେ । ତାପରେ ଯେତେବେଳେ "ଦି ୟୁନିୟନ ଆଣ୍ଡ ପ୍ରଗ୍ରେସ୍" ଦଳ ପ୍ରଭାବରେ ତୁର୍କୀର ନବଜନ୍ମ ହେଲା ସେତେବେଳେ ସେ ଦେଶକୁ ଫେରି ଆସିଲେ । ମହାଯୁଦ୍ଧ ସମୟରେ ତୁରସ୍କ ସରକାର ହାନନ୍‌ଙ୍କୁ ବିଦ୍ୟାଳୟ ସଂଗଠନ କାର୍ଯ୍ୟରେ ସିରିଆକୁ ପ୍ରେରଣ କରିଥିଲେ । କନଷ୍ଟାଣ୍ଟିନୋପଲର ପଚିଶଟି ତୁର୍କୀ ମହିଳା ଛାତ୍ରୀଙ୍କୁ ନେଇ ହାନୁନ୍ ଗଣ ବିଦ୍ୟାଳୟ ସ୍ଥାପନ କରିଥିଲେ ।

ଦିନେ କାମ କରୁ କରୁ ଅତ୍ୟଧିକ ପରିଶ୍ରମ ଫଳରେ ହାନୁମ ଅଜ୍ଞାନ ହୋଇ ପଡ଼ିଲେ । ସପ୍ତାହକ ପରେ ରୋଗଶଯ୍ୟା ଛାଡ଼ି ଏହି ବୀରାଙ୍ଗନା ପୂର୍ଣ୍ଣ ଉଦ୍ୟମରେ ଅସମାପ୍ତ କାର୍ଯ୍ୟ ପୂର୍ଣ୍ଣାଙ୍ଗ କଲେ । ପୂର୍ବେ ସିରିଆରେ ଫରାସୀ ଭାଷା ପଢ଼ା ହେଉଥିଲା । ହାନୁନ୍ ଏହି ଶିକ୍ଷାନୀତି ପରିବର୍ତ୍ତନ କରି ଫରାସୀ ଯାଗାରେ ଆରବୀ ଭାଷା ପ୍ରଚଳନ କଲେ । ସେ ଜାଣିଥିଲେ ଓ ବରାବର କହୁଥିଲେ ନିଜର ମାତୃଭାଷାକୁ ଅବଜ୍ଞା କଲେ ଗୋଟିଏ ଜାତି କଦାପି ବଢ଼ିପାରେ ନାହିଁ । ହାନୁନ୍‌ଙ୍କ ଚେଷ୍ଟାରୁ ୧୯୦୯ ଖ୍ରୀଷ୍ଟାବ୍ଦରେ ତୁରସ୍କରେ ନାରୀ ଜାଗରଣ ଆରମ୍ଭ ହୋଇଥିଲା । ଅବରୋଧ ପ୍ରଥାର ପାଷାଣ ପ୍ରାଚୀର ଭାଙ୍ଗିଲା ପରେ ସେ ଅଭିଯାନ କରିଥିଲେ ବହୁବିବାହ ବିରୁଦ୍ଧରେ । ତାଙ୍କର ପ୍ରତ୍ୟେକ ବହିରେ ପୁରୁଷର ବହୁ ପତ୍ନୀମାନଙ୍କ ପ୍ରତି ପାଶବିକ ଅତ୍ୟାଚାର ଓ ଅସହାୟ ନାରୀମାନଙ୍କର ମର୍ମନ୍ତୁଦ କାହାଣୀ ଜୀବନ୍ତ ହୋଇ ଉଠିଛି । ପୁରୁଷର ଏହି ନିର୍ମମ ବହୁ-ବିବାହ ପ୍ରଥାକୁ ହାନୁନ୍ ଅନ୍ତରରେ ସହିତ ଘୃଣା କରିଥିଲେ, ଆଉ ତା ଠାରୁ ସେ ଅଧିକ ଘୃଣା କରୁଥିଲେ ନାରୀର ପ୍ରାଣ ଓ ଦେହ ନେଇ

ଯେଉଁ ପୁରୁଷମାନେ ପଶୁ ପରି ଝଣା ଓଝଗ କରୁଥିଲେ, ସେମାନଙ୍କୁ । ପଶୁ ପ୍ରବୃତ୍ତିର ସ୍ୱାମୀମାନଙ୍କୁ ସେଥିପାଇଁ ସେ ଘୃଣା କରୁଥିଲେ । ସେଇ କାରଣରୁ ଯେଉଁଦିନ ସ୍ୱାମୀ ତାଙ୍କର ପ୍ରାଣ ଭରା ସ୍ନେହ ଓ ପ୍ରେମକୁ ସଂପୂର୍ଣ୍ଣ ଉପେକ୍ଷା କରି ଦ୍ୱିତୀୟବାର ବିବାହ କଲେ, ସେଦିନ ଆଜନ୍ମ ବିଦ୍ରୋହୀ ହାନୁନ୍ ନିଜର ସ୍ୱାମୀଙ୍କ ବିରୁଦ୍ଧରେ ବି ବିଦ୍ରୋହୀ ହୋଇ ଉଠିଲେ । ସ୍ୱାମୀଙ୍କର କାତର ଅନୁରୋଧ ଓ ମିନତିରେ ମଧ୍ୟ ସେ ତାଙ୍କୁ କ୍ଷମା କରି ପାରି ନ ଥିଲେ । ନିଜର ଶିଶୁ ପୁତ୍ର-ମାନଙ୍କୁ ନେଇ ସେ ପୃଥକ ହୋଇଗଲେ । କିଛିଦିନ ପରେ ହାନୁନ୍ ମଧ୍ୟ ସ୍ୱାମୀଙ୍କ ଉପରେ ପ୍ରତିଶୋଧ ନେବାକୁ ନିଜେ ପରିଣୀତା ହେଲେ ।

ହାନୁନ୍‌ଙ୍କ ଚେଷ୍ଟା ଫଳରେ ଆଜି ତୁର୍କୀର ରମଣୀମାନେ ପାଶ୍ଚାତ୍ୟ ନାରୀଙ୍କ ସଙ୍ଗେ ଯେ କୌଣସି ବିଷୟରେ ସମାନ ପାଦ ପକାଇ ଚାଲି ଯାଇ ପାରନ୍ତି । ଦେଶ ସାରା ଝିଅମାନଙ୍କ ଦୈହିକ ଉନ୍ନତି ପାଇଁ ବ୍ୟାୟାମ କେନ୍ଦ୍ର ପ୍ରତିଷ୍ଠା ହାନୁନ୍‌ଙ୍କ ପ୍ରଚେଷ୍ଟାରେ ହୋଇଛି । ତୁର୍କୀ ନାରୀମାନେ ମଧ୍ୟ ଅଶ୍ୱାରୋହଣ, ଟେନିସ୍ ଖେଳ, ନୃତ୍ୟ, ସନ୍ତରଣ, ନୌକାଚାଳନ ପ୍ରଭୃତି ସମସ୍ତ କ୍ଲେଶକର ବ୍ୟାୟାମରେ ମଧ୍ୟ ଦିନକୁ ଦିନ ସୁପଟୁ ହୋଇ ପାରୁଛନ୍ତି । ହାନୁନ୍‌ଙ୍କ ଆପ୍ରାଣ ଚେଷ୍ଟା ଆଜି ଦେଶ ବକ୍ଷରେ ସଫଳ ହୋଇଛି । ସାହିତ୍ୟ ସମାଜ, ରାଷ୍ଟ୍ରରେ ସେ ଯେଉଁ ବିପ୍ଳବ ଆଣିଥିଲେ ତାର ସ୍ପର୍ଶ କାଠିରେ ଆଜି ମୃତ ଜାତି ସଂଜୀବିତ ଓ ପ୍ରତିଷ୍ଠିତ ହୋଇଛି । ଜଗତରେ ଜାତି ସଂଘରେ ଆଜି ତୁର୍କୀ ମଧ୍ୟ ଗୋଟିଏ ପ୍ରବଳ ପରାକ୍ରମ ଶକ୍ତି ବୋଲି ପରିଗଣିତ ହୋଇଛି ।

—✽—

# ବିପ୍ଳବିଣୀ ସାଧିକା ଚିତୋର ରାଣୀ ମୀରାବାଈ

ବୀର ରମଣୀ କହିଲେ ନାରୀର ଶାରୀରିକ ବୀରତ୍ୱକୁ କେବଳ ବୁଝାଏ ନାହିଁ; ନାରୀର ମାନସିକ ବୀରତ୍ୱକୁ ମଧ୍ୟ ବୁଝାଏ । ରମଣୀ ତାର ଦୈହିକ ବୀରତ୍ୱରେ ଯେତେ ଗରୀୟସୀ ହେଉ ବା ନ ହେଉ ତାର ମାନସିକ ବୀରତ୍ୱ ତାକୁ ବିଶ୍ୱ ଜଗତରେ ଚିରନ୍ତନ ମହିମାରେ ମଣ୍ଡିତ କରିଅଛି । ନାରୀର ବର୍ଣ୍ଣନାକୁ ଯେଉଁ କବିମାନଙ୍କର ଭାରତୀରେ ରୂପାୟିତ ହୋଇଅଛି, ତାହା ଅନୁଧାବନ କଲେ ଆମ୍ଭେମାନେ ଜାଣିପାରୁଁ, ନାରୀ କେବଳ ଯୁଦ୍ଧାଭିଯାନରେ ଅଗ୍ରଣୀ ହୋଇ ମନୁଷ୍ୟଜାତିର ସମ୍ମାନାର୍ହା ହୋଇନାହିଁ; ମାତ୍ର ତାର ମାନସିକ ଦୃଢ଼ ସଂକଳ୍ପ, ନିଷ୍ପତ୍ତ୍ୟାତ୍ମିକା ବୁଦ୍ଧି, ଅବ୍ୟଭିଚାରିଣୀ ଜ୍ଞାନ, ଭକ୍ତିଭାବ ପୁଣି ମାଧୁର୍ଯ୍ୟମୟୀ ପ୍ରକୃତି ଦ୍ୱାରା ସମ୍ମାନାର୍ହା ହୋଇ ପାରିଅଛି । ନାରୀର ମନପ୍ରାଣ କୁସୁମଠାରୁ କୋମଳ, ପୁଣି ନୈତିକ କ୍ଷେତ୍ରରେ ତାହା କୁଳିଶଠାରୁ ମଧ୍ୟ କଠିଣ । ନାରୀର ବୀରତ୍ୱ କେବଳ ଯୁଦ୍ଧଜୟ ଭିତରେ ସୀମିତ ନୁହେଁ । ତାହା ତାହାର ଆତ୍ମଜୟର ଅନନ୍ତ ଲୀଳାରେ ଅସୀମ ଭାବରେ ଜୀବନ ମୁକୁରରେ ପ୍ରତିବିମ୍ବିତ ହୁଏ । ତେଣୁ ବୀରରମଣୀର ଅନ୍ତର୍ନିହିତ ଅର୍ଥକୁ ଅନୁଧାବନ କଲେ ଜଣାପଡ଼େ, ନାରୀର ବୀରତ୍ୱ ଏକାର୍ଥକ ନୁହେଁ । ସେହି ବୀରତ୍ୱ ତାର ଜୀବନର ପ୍ରତିକୂଳ ପରିବେଶ ଓ ପରିସ୍ଥିତିରେ ନାନା ଘଟଣାରେ ନାନା ପ୍ରକାରେ ଶତଦଳ ସରୋଜ ଭଳି ବହୁ ବିଭବରେ ବିକଶିତ ହୁଏ । ସେହି ବୀର ଜୀବନ ଶତଦଳର ମଞ୍ଜୁଳ ସୁରଭି ଜନସମାଜକୁ ଆନନ୍ଦିତ କରେ ।

ନାରୀ ଯୁଗେ ଯୁଗେ ମାନସ ରାଜ୍ୟରେ ଅସୀମ ସାହସୀକତା ସହିତ ବିପ୍ଳବର ବୀଜ ବୁଣିଛି—ନିଜେ ଅନବଚ୍ଛିନ୍ନ କଷ୍ଟ ସହ୍ୟ କରିଛି—ତାର ଜୀବନର ଲକ୍ଷ୍ୟସ୍ଥଳରେ ଉପନୀତ ହେବା ପାଇଁ । ସେ ବୀରବାଳା ଭଳି ତା'ର ପରିବେଶ ଓ ପରିସ୍ଥିତି ବିରୁଦ୍ଧରେ ଅକ୍ଳାନ୍ତ ଭାବରେ ସଂଗ୍ରାମ କରିଅଛି ଏବଂ ସେଥିପାଇଁ ନିଜର ଅମୂଲ୍ୟ ଜୀବନ ଦାନ କରି ଦେଇଛି, କିନ୍ତୁ ଅର୍ଦ୍ଧ ପଥରେ ତାର ମାନସ ସଂଗ୍ରାମ ବା ନୈତିକ ସଂଗ୍ରାମକୁ ବିପଦ ଆଗରେ ଉଦ୍‌ଯାପନ କରି ଭାଙ୍ଗି ପଡ଼ି ନାହିଁ । ସେହି କାରଣରୁ ଏହିପରି ଅତି ଦୃଢ଼ ସଂକଳ୍ପିତା ଓ ଦୃଢ଼ ମାନସିକତା ନାରୀମାନେ ବାସ୍ତବରେ ବୀର ରମଣୀ ଅଟନ୍ତି । ଏହି ଆଦର୍ଶ ଘେନି ଭାରତରେ ମଧ୍ୟ ଯୁଗରେ ଷୋଡ଼ଶ ଶତାବ୍ଦୀରେ ଜନ୍ମିଥିଲେ ଜଣେ ଆର୍ଯ୍ୟ ନାରୀ—ଆର୍ଯ୍ୟ ସଂସ୍କୃତିରେ ଥିଲା ଏହି ମହିମାମୟୀ ନାରୀଙ୍କର ଅଗାଧ ବିଶ୍ୱାସ । ଏହି ଶ୍ରେଷ୍ଠା ବିପ୍ଳବିଣୀ ନାରୀଙ୍କର ନାମ ଥିଲା ମୀରା ବାଈ । ଆମ ଭାରତରେ ଏହି ନାରୀଙ୍କର କୀର୍ତ୍ତିଗାଥା ସମସ୍ତେ ଜାଣନ୍ତି ନାହିଁ, କିନ୍ତୁ ଶିକ୍ଷିତ ଲୋକେ ତାଙ୍କ ଚରିତ ପାଠ କରିଥିବାରୁ ତାଙ୍କୁ ଜାଣିଛନ୍ତି । ଭାରତୀୟ ସାଧକଶ୍ରେଣୀ କେବଳ ନୁହେଁ, ଜନସାଧାରଣ ତାଙ୍କର ଅଦ୍ଭୁତ ଚରିତଗାଥା ଜାଣନ୍ତି । ତେଣୁ ତାଙ୍କର ପରିଚିତ ଭାରତବର୍ଷର ଜନଚେତନାରେ ଭକ୍ତିଭାବ ଓ ଶ୍ରଦ୍ଧାଭାବ ସୃଷ୍ଟି କରିଥାଏ ।

ଷୋଡ଼ଶ ଶତାବ୍ଦୀରେ ମୀରା ବାଈ ଏଡ଼ତାର ଗୋଟିଏ ସାଧାରଣ ଜମିଦାର ପରିବାରରେ ବଢ଼ିଥିଲେ । ପିଲାଦିନୁ ତାଙ୍କର ମନ ଭଗବତ୍ ଅଭିମୁଖୀ ଥିଲା ଏବଂ ଭଗବାନଙ୍କୁ ଇଷ୍ଟ ବୋଲି ଭାବି ସେ କର୍ମ କରୁଥିଲେ । ତାଙ୍କ ଜୀବନର ସମୁଦାୟ କର୍ମର

ଆରମ୍ଭ ହୋଇଥିଲା, ତାଙ୍କର ଇଷ୍ଟଦେବତା ଗିରିଧରୀ ଲାଲଙ୍କ ଯୋଗ । ତାଙ୍କ ଜୀବନର ସମାପ୍ତି ହୋଇଥିଲା ସେହି ଠାକୁରଙ୍କ ମୂର୍ତ୍ତିରେ ବିଲୀନ ହୋଇ । ଭାରତବର୍ଷରେ ମଧ୍ୟଯୁଗୀୟ ସାଧକ ଓ ସିଦ୍ଧ ମହାତ୍ମାମାନେ ଭଗବତ୍‌ପରାୟଣ ଥିଲେ । ସେମାନେ ଭଗବତ୍ ମହିମା ସେମାନଙ୍କ ଜୀବନରେ କେବଳ ଅନୁଭବ କରିଥିଲେ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ସେହି ସାଧକମାନେ ଓ ସିଦ୍ଧ ମହାତ୍ମାମାନେ ଭଗବାନଙ୍କର ବିଭୂତି ମାନବ ସମାଜରେ ନିଜର ସାହିତ୍ୟ-ରଚନାଦ୍ୱାରା ମଧ୍ୟ ବ୍ୟାପ୍ତ କରି ଯାଇଛନ୍ତି । ମହାତ୍ମା ତୁଳସୀ ଦାସ, କବୀର, ନାନକ, ତୁକାରାମ ପ୍ରଭୃତିଙ୍କ ଭଳି ଆମର ଭକ୍ତିମତୀ ନାରୀ ମୀରା ବାଈ ଜଣେ ସିଦ୍ଧ ସାଧିକା ଥିଲେ ଏବଂ ତାଙ୍କର ଭଜନ ସାହିତ୍ୟ ଭାରତୀୟ ସନ୍ଥ ସାହିତ୍ୟ କ୍ଷେତ୍ରରେ ଗୋଟିଏ ଅମୂଲ୍ୟ ସ୍ଥାନ ଅଧିକାର କରିଅଛି ।

ମୀରା ଭଗବତ୍ ସାନ୍ନିଧ୍ୟ ପାଇଥିଲେ ବୋଲି ତାଙ୍କ ଉପରେ ହୋଇଥିବା ପାରିବାରିକ ଓ ସାମାଜିକ ତଥା ରାଷ୍ଟ୍ରୀୟ ଅବିଚାର ଅତ୍ୟାଚାରମାନଙ୍କୁ ମୁଣ୍ଡପୋତି ସହ୍ୟ କରିଥିଲେ । ତାଙ୍କର ଜୀବନରେ ଧୈର୍ଯ୍ୟ ଥିଲା ଏକ ମହତ ଗୁଣ । ସେ ଅବିବାହିତା ଅବସ୍ଥାରେ ତାଙ୍କ ଘରକୁ ଆସିଥିବା ଜଣେ ସାଧୁ ମହାତ୍ମାଙ୍କଠାରୁ ଅତି ଆଗ୍ରହରେ ଗୋଟିଏ ସୁନ୍ଦର ଦେବମୂର୍ତ୍ତି ପୂଜା କରିବେ ବୋଲି ରଖିଥିଲେ ସେହି ସାଧୁ ମୂର୍ତ୍ତି ନ ଦେବାରୁ ମୀରା ଉପାସ ରହିଥିଲେ । ଗୃହିଦିନ ପରେ ସାଧୁ ସ୍ୱପ୍ନାଦିଷ୍ଟ ହୋଇ ମୀରାଙ୍କୁ ମୂର୍ତ୍ତି ଦେଇଗଲେ । ସେହି ମୂର୍ତ୍ତି ଗିରିଧର ଲାଲଙ୍କୁ ସେ ଦେହ ମନ ସମର୍ପଣ କରି ଦେଇଥିଲେ । ଠାକୁରଙ୍କ ପୂଜା, ଅର୍ଚ୍ଚନା, ଓ ଠାକୁରଙ୍କ ନିକଟରେ ଭକ୍ତିପୂର୍ଣ୍ଣ ଭଜନ ଜଣାଣ ଗାଇ ତାଙ୍କର ଦିନ କଟୁଥିଲା । ତାଙ୍କର ବୟସ

ହେଲରୁ ତାଙ୍କୁ ବିବାହ ଦେବା ପାଇଁ ତାଙ୍କର ଆତ୍ମୀୟମାନେ ପାତ୍ର ଖୋଜିଲେ । ରାଜସ୍ଥାନରେ ମେବାରର ରାଣା କୁମ୍ଭଙ୍କ ସହିତ ତାଙ୍କର ବିବାହ ହୋଇଥିଲା । ମୀରା ଅତି ସୁନ୍ଦରୀ ଓ ଗୁଣବତୀ ଥିଲେ । ସେଥିପାଇଁ ରାଣାଙ୍କ ରାଜବଂଶରେ ତାଙ୍କର ବିବାହ ହୋଇଥିଲା । ସେ ରାଜକନ୍ୟା ନ ଥିଲେ; ମାତ୍ର ରାଜପତ୍ନୀ ଓ ରାଜବଧୂ ହୋଇଥିଲେ ।

ଚିତୋର ଗଡ଼ରେ ଶ୍ୱଶୁର ଗୃହକୁ ଯାଇ ମୀରା ବାଈ ଆଦୌ ସୁଖି ହୋଇ ପାରିଲେ ନାହିଁ, କାରଣ ତାଙ୍କର ଚିରସହଚର ଗିରିଧର ଗୋପାଳ ଠାକୁରଙ୍କୁ ପୂଜା ଅର୍ଚ୍ଚନା କରିବାରେ ବଡ଼ ପାରିବାରିକ ବ୍ୟାଘାତମାନ ପହଞ୍ଚୁ ଥିଲା । ତାଙ୍କର ଶ୍ୱଶୁର କୁଳଦେବୀ ଦୁର୍ଗାଙ୍କର ଆରାଧନା କରିବାକୁ କହୁଥିଲେ । ମୀରା କୁଣ୍ଠିତା ହୋଇ ଦୁର୍ଗା ପୂଜା କରିବାକୁ ଯାଉ ନ ଥିଲେ । ସେ ନିଜର ଇଷ୍ଟଦେବତା ଗିରିଧର ଲାଲଙ୍କ ଆରାଧନା କରୁଥିଲେ । ଏହି କାରଣରୁ ତାଙ୍କର ସ୍ୱାମୀ ଓ ପରିବାର ସମସ୍ତେ ତାଙ୍କୁ ଅତିଶୟ ବିଷଦୃଷ୍ଟିରେ ଦେଖୁଥିଲେ । ତାଙ୍କର ନଣନ୍ଦ ଉଦାବାଈ ତାଙ୍କୁ ଭକ୍ତି ପଥରୁ ନିବୃତ୍ତ କରିବା ପାଇଁ ବହୁତ ଚେଷ୍ଟା କରି ମଧ୍ୟ ତାହା ପାରିଲେ ନାହିଁ । ତାଙ୍କର ଶାଶୁ ଶ୍ୱଶୁର ଓ ସ୍ୱାମୀ ସମସ୍ତେ ତାଙ୍କୁ ଗିରିଧର ଗୋପାଳଙ୍କ ପୂଜା ସେବାରୁ ନିବୃତ୍ତ ହେବାକୁ କହିଲେ, ମାତ୍ର ମୀରା ତାହା ଶୁଣିଲେ ନାହିଁ । ତାଙ୍କର ସ୍ୱାମୀ କହିଲେ, "ଗିରିଧରଙ୍କ ପୂଜା ଅର୍ଚ୍ଚନାଦି ସେ ରାଜାନ୍ତଃପୁରରେ କରନ୍ତୁ । ରାଜପ୍ରାସାଦ ବହିର୍ଦ୍ଦେଶକୁ ଯାଇ ଠାକୁର ମନ୍ଦିରରେ ନିତି ଭଜନ ଗାଇ ନାଚି ଲୋକସମାଗମ କରାଇ ରାଜବଂଶର ସମ୍ମାନ ମର୍ଯ୍ୟାଦା କ୍ଷୁର୍ଣ୍ଣ କରିବା ରାଜବଧୂ ମୀରାବାଈଙ୍କ ପକ୍ଷରେ ଅବିଧି ହେଉଅଛି; ତହିଁରୁ ସେ ନିବୃତ୍ତ ହୁଅନ୍ତୁ ।" ତାଙ୍କର ଶ୍ୱଶୁର ଶାଶୁ

ମଧ୍ୟ ବହୁତ ବୁଝାଇଲେ । ମାତ୍ର ଭଗବତ୍ ପ୍ରାଣା ଭକ୍ତିଶୀଳା କ୍ଷତ୍ରିୟନାରୀ ମୀରା ସେମାନଙ୍କ କଥାରେ ଅବାଧ୍ୟ ହେଲେ । ନିତ୍ୟ ଶ୍ରୀକୃଷ୍ଣମନ୍ଦିରକୁ ଯାଇ ଆଳତି କରିବା, ଫୁଲଗୁଣ୍ଠି ଦେବତାଙ୍କୁ ପିନ୍ଧାଇବା, ନୈବେଦ୍ୟ ଦେବା ଓ ନିଜେ ଠାକୁରଙ୍କ ପାଇଁ ସ୍ୱହସ୍ତରେ ପାକ କରିବା, ବୈଷ୍ଣବମାନଙ୍କ ଆଗରେ ଭଜନ କୀର୍ତ୍ତନ ଗାନ କରିବାରେ ମୀରାଙ୍କର ଆନନ୍ଦ ହେଉଥିଲା । ମାତ୍ର ରାଜବଂଶର ପରମ୍ପରା ବିଧି ନିଷେଧ ପଦମର୍ଯ୍ୟାଦା ତାଙ୍କର ସାଧନ ପଥର କଣ୍ଟକ ହେଲା । ନାନାପ୍ରକାରର କୁକଥା କଟୂକ୍ତି ଭର୍ତ୍ସନା ଓ ଲୋକନିନ୍ଦାରେ ମୀରାଙ୍କର ଜୀବନ ରାଜଭବନରେ ଅତ୍ୟନ୍ତ ଦୁର୍ବହ ହୋଇପଡ଼ିଲା । ତାଙ୍କର ସ୍ୱାମୀ ତାଙ୍କର ପ୍ରକୋଷ୍ଠ ନିକଟରେ ପ୍ରହରୀ ରଖାଇଲେ । ତାଙ୍କର ଅମଳ ଚରିତ୍ର ପ୍ରତି ମଧ୍ୟ ପରିବାରର ବ୍ୟକ୍ତିମାନଙ୍କର ଓ ସ୍ୱାମୀ ରାଣା କୁମ୍ଭଙ୍କର ମନରେ ଘୋର ସନ୍ଦେହ ଜାତ ହେଲା । ମୀରାବାଈ ଅବକୁଣ୍ଠିତା ନ ଥିଲେ । ହରିନାମ ସଂକୀର୍ତ୍ତନର ଆହ୍ୱାନ ତାଙ୍କୁ ଆକାଶର ବିହଙ୍ଗ ପରି ମୁକ୍ତିଚାରିଣୀ କରିଥିଲା । ସେ ଦେହ-ଗେହ ବିଶୋରା ହୋଇ ଭାବାବେଶରେ ଶ୍ରୀକୃଷ୍ଣଙ୍କର ଲୀଳା ବିଭୂତିରେ ମଗ୍ନ ରହୁଥିଲେ ।

ରାଜଗୃହ ବିଧି-ନିଷେଧକୁ ଅତିକ୍ରମ କରିବା ତାଙ୍କ ପକ୍ଷରେ ଏକ ଅପରାଧ ବୋଲି ବିବେଚିତ ହେଲା । ଏଥିରେ କେବଳ ରାଜ ପରିବାର ନୁହେଁ; ମାତ୍ର ସତୀ ସୀତାଙ୍କୁ ଦୁର୍ନାମ କଲା ଭଳି ଲୋକ ମୁଖରେ ମୀରାଙ୍କ ଦୁର୍ନାମ ଖଳ ସ୍ୱଭାବର ଅଧାର୍ମିକ, ଅଜ୍ଞାନୀ ବ୍ୟକ୍ତିମାନେ ଚତୁର୍ଦ୍ଦିଗରେ ପ୍ରଚାର କରିବାକୁ ଲାଗିଲେ । ମୀରାଙ୍କ ଶ୍ୱଶୁର ଓ ସ୍ୱାମୀ ବଡ଼ ସଙ୍କଟରେ ପଡ଼ି ତାଙ୍କୁ ହତ୍ୟା କରିବା ପାଇଁ ଷଡ଼ଯନ୍ତ୍ର କଲେ । ଭଗବାନ୍ ଶ୍ରୀକୃଷ୍ଣଙ୍କ ଚରଣୋଦକ ବୋଲି କାଳକୂଟ ବିଷ-

ପାନ ମୀରାଙ୍କ ନିକଟକୁ ତାଙ୍କ ଶ୍ୱଶୁର ଚମ୍ପେଲି ନାମକ ରାଜ-ଭବନର ଦାସୀ ହସ୍ତରେ ପଠାଇଥିଲେ । ମୀରା ଶ୍ୱଶୁରଙ୍କର ସ୍ନେହାଶିଷ ମନେକରି ସେହି ବିଷ ତାଙ୍କର ଇଷ୍ଟ ନୈବେଦ୍ୟ ଭାବି ପାନ କଲେ । ମାତ୍ର ତହିଁରେ କିଛି ମାତ୍ର ପ୍ରତିକ୍ରିୟା ହେଲା ନାହିଁ । କାଳକୂଟ ମଧ୍ୟ ବିଭୁଦୟାରୁ ଅମୃତମୟ ହୋଇଗଲା । ମୀରାଙ୍କର ମହାନ୍ ଜୀବନନାଶ ହେଲା ନାହିଁ । ଏଥିରେ ନିଷ୍ଫଳ ହୋଇ ତାଙ୍କର ଶ୍ୱଶୁର ପୁଣି ଗିରିଧର ଲାଲଙ୍କ ପାଇଁ ପୂଜାର ପୁଷ୍ପହାର ମୀରା ବାଈଙ୍କ ନିକଟକୁ ତାଙ୍କର ସଖି ଚମ୍ପା ଓ ଚମ୍ପେଲିଙ୍କ ହସ୍ତରେ ପଠାଇଥିଲେ । ସେହି ପୁଷ୍ପହାର ପେଟିକାରେ ଭୟଙ୍କର ବିଷଧର ସର୍ପ ରହିଥିଲା । ମୀରା ଶ୍ୱଶୁରଙ୍କ ଆଶୀର୍ବାଦ ଉପହାରରେ ଅତ୍ୟନ୍ତ ପ୍ରୀତା ହୋଇ ସେହି ବିଷଧର ସର୍ପ ପେଟିକାକୁ ନିଜର ଇଷ୍ଟ ଦେବତାଙ୍କୁ ପିନ୍ଧାଇବା ନିମିତ୍ତ ମନ୍ଦିରକୁ ନେଇଗଲେ । ସଖିମାନେ ଭୀତ ଭାବରେ ଆସନ୍ନ ସଙ୍କଟର ଅବସ୍ଥା ଅନୁମାନ କରି କମ୍ପିତା ହେଉଥିଲେ । ମାତ୍ର ମୀରା ସେହି ପେଟିକାରେ ଠାକୁରଙ୍କ ପୂଜାଫୁଲ ରହିଛି ମନେକରି ପେଟିକା ଉନ୍ମୋଚନ କରି ଦେଖିଲେ ଯେ ସୁଗନ୍ଧିତ ମଞ୍ଜୁଳପୁଷ୍ପମାଳା ସୁରକ୍ଷିତ ହୋଇ ରହିଅଛି । ସେ ଇଷ୍ଟଦେବତାଙ୍କୁ ସେହି ପୁଷ୍ପହାର ପ୍ରଦାନ କରି ପୁଣି ନିଜେ ମସ୍ତକରେ ଧାରଣ କଲେ । ଏହି ସମ୍ବାଦ ରାଜପୁରରେ ବିଷମ ଉତ୍ତେଜନା ଓ ବିସ୍ମୟ ସୃଷ୍ଟି କରିଥିଲା । ଏହିପରି ଭାବରେ ମୀରାଙ୍କ ଜୀବନ-ଦୀପ ନିର୍ବାଣ କରିବା ପାଇଁ ମେବାର ରାଣା ଭବନରେ ଗୋଟିକ ପରେ ଗୋଟିଏ ଷଡ଼ଯନ୍ତ୍ର ଚାଲିଥିଲା ।

କିଛିଦିନ ଉତ୍ତାରେ ମୀରାଙ୍କ ଶ୍ୱଶୁର ଇହଧାମ ତ୍ୟାଗ କଲେ । ଏହା ପରେ ମୀରାଙ୍କ ପତି ରାଣା କୁମ୍ଭ ହେଲେ ମେବାରର ରାଣା । ପିତାଙ୍କର ଜୀବନ କାଳରେ ରାଣା କୁମ୍ଭ ମୀରାଙ୍କ ପ୍ରତି ଯେତେ ଅତ୍ୟାଚାର କରି

ପାରୁ ନ ଥିଲେ, ପିତୃବିୟୋଗ ପରେ ସେହି ଅତ୍ୟାଚାର ଶତଗୁଣରେ ବର୍ଦ୍ଧିତ ହେବାକୁ ଲାଗିଲା । ମୀରାଙ୍କୁ ସତତ ପ୍ରହରୀ ବେଷ୍ଟିତ ହୋଇ ରାଜାନ୍ତଃପୁରରେ ବନ୍ଦିନୀ ରହିବାକୁ ପଡ଼ୁଥିଲା । ସେ କିନ୍ତୁ ସର୍ବଦା ତାଙ୍କର ଇଷ୍ଟ ସେବାରେ ନିରତା ରହୁଥିଲେ । ଶ୍ରୀ କୃଷ୍ଣଙ୍କ ସହିତ ସେ ଏକାତ୍ମ ହୋଇଥିଲେ ଏବଂ ଇଷ୍ଟଦେବତାଙ୍କର ଦର୍ଶନ—ସ୍ପର୍ଶନ ପାଉଥିଲେ । ଦିନେ ମୀରାଙ୍କ ଦେବମନ୍ଦିର ଭିତରୁ ପୁରୁଷ କଣ୍ଠ ଶୁଣାଗଲା । ଚର ଏହି ସମ୍ବାଦ ଦିଅନ୍ତେ ରାଣା କୁମ୍ଭ କୋଷମୁକ୍ତ ଅସିଧରି ସେହି ମନ୍ଦିର ନିକଟରେ ଉତ୍କର୍ଣ୍ଣ ହୋଇ ମୀରାଙ୍କ ସହିତ କୌଣସି ପୁରୁଷର କଥୋପକଥନ ଶୁଣିବାକୁ ଲାଗିଲେ । ସେ ଅସହିଷ୍ଣୁ ହୋଇ ମନ୍ଦିର ଦ୍ୱାର ଉନ୍ମୋଚିତ କରି ଦେଖିଲେ କେହି ନାହିଁ । କ୍ରୋଧରେ ପ୍ରଜ୍ୱଳିତ ହୁତାଶନ ପରି ଉତ୍ତେଜନାରେ ଅଧୀର ହୋଇ ରାଣା ମୀରାଙ୍କୁ ପଚାରିଲେ ଯେସେ କାହା ସହିତ ହାସ୍ୟ ପରିହାସ ବାକ୍ୟାଳାପ କରୁଥିଲେ । ମୀରା ଉତ୍ତର ଦେଲେ ଗିରିଧରଲାଲ୍‌ଙ୍କ ସହିତ । ରାଣା ଏଥିରେ ଅବିଶ୍ୱାସ କଲେ ତନ୍ନତନ୍ନ କରି ରାଜପୁରୀରେ ଅନ୍ୟ-ପୁରୁଷ ଥିବାର ସନ୍ଦେହ କରି ଅନୁସନ୍ଧାନ କରାଇ "ବିଫଳ ମନୋରଥ ହେଲେ । ମୀରାବାଈ ସ୍ୱାମୀଙ୍କୁ କହିଲେ ତୁମ ଆଗରେ ଗୋପାଳ ଦଣ୍ଡାୟମାନ । ସେ କଥା କହୁଛନ୍ତି ତୁମେ ଶୁଣିପାରୁ, ନାହିଁକି ଦେଖିପାରୁ ନାହିଁ ?" ରାଣା କୁମ୍ଭ ଆଗକୁ ଚାହିଁ ଦେଖିଲେ—ଗୋଟିଏ ଭୀଷଣାକୃତି ରାକ୍ଷସ ଅସି ଧରି ଠିଆ ହୋଇଛି । ଏ ଭୀଷଣ ଦୃଶ୍ୟରେ ରାଣା ପଳାଇଗଲେ । ଭଗବାନଙ୍କ ପାଇଁ ମୀରାଙ୍କୁ ଶତ ଲାଞ୍ଛନା ଅପମାନ ପାଇବାକୁ ହୋଇଥିଲା ।

ମୀରାଙ୍କର ଯଶ ଖ୍ୟାତି ରାଜସ୍ଥାନ ଛାଡ଼ି ଭାରତର ନାନା ଅଞ୍ଚଳରେ ବ୍ୟାପ୍ତ ହେଲା । ନାନା ଦୂରଦେଶାଗତ ସାଧୁ

ସନ୍ୟାସୀମାନେ ମୀରା ଭଜନ ଶୁଣିବା ନିମିତ୍ତ ମେବାର ରାଜ୍ୟକୁ ଆସିବାକୁ ଲାଗିଲେ । ମୀରା ନିତ୍ୟ ସନ୍ଧ୍ୟାକାଳରେ କୀର୍ତ୍ତନ ଭଜନ କରିବାକୁ ଦେବମନ୍ଦିରକୁ ଯାଉଥିଲେ । ତାଙ୍କର ସୁକଣ୍ଠ ଗୀତରେ ସମସ୍ତେ ମୁଗ୍ଧ ହେଉଥିଲେ । ଏହି ଭକ୍ତିମତୀଙ୍କ ଭଜନ ଗୀତ ଶୁଣିବା ପାଇଁ ଭାରତର ବାଦ୍‌ସାହ ଆକ୍‌ବର ଓ ତାନ୍‌ସେନ୍ ଛଦ୍ମ ବୈଷ୍ଣବ ବେଶରେ ମେବାଡ଼ ରାଜ୍ୟକୁ ଆସି ମୀରା ଭଜନ ଶୁଣି ତୃପ୍ତ ହୋଇଯାଇଥିଲେ । ବାଦ୍‌ଶାହ ଆକ୍‌ବର ମୀରାଙ୍କ ଗୀତ ଶୁଣି ମୀରାଙ୍କୁ ସ୍ୱନାମାଙ୍କିତ ବହୁମୂଲ୍ୟ ହୀରକ ହାର ଉପହାର ଦେବାକୁ ଇଚ୍ଛା ପ୍ରକାଶ କଲାରୁ ମୀରା କହିଥିଲେ, "ଭଗବାନଙ୍କର ନାମ ମହିମା କୀର୍ତ୍ତନ ଅମୂଲ୍ୟ ବସ୍ତୁ । ପ୍ରଭୁଙ୍କ ଭଜନ ଗାନ ବିନିମୟରେ ଉପହାର ନେବାକୁ ମୁଁ ପସନ୍ଦ କରୁନାହିଁ ।" ତେଣୁ ଆକ୍‌ବର ନିଜର ବହୁମୂଲ୍ୟ ହୀରକ ହାର ମୀରାଙ୍କୁ ବାଧ୍ୟ କରି ଗିରିଧର ଗୋପାଳଙ୍କ ନିମନ୍ତେ ଦେଇ ଯାଇଥିଲେ । ମୀରା ପରେ ତାହା ଜାଣି ପାରିଥିଲେ ଓ ତାଙ୍କର ସ୍ୱାମୀ ମଧ୍ୟ ଏହା ଜାଣି ପାରିଥିଲେ ।

ମୀରାଙ୍କ ନିକଟରେ ଏହି ବହୁମୂଲ୍ୟ ହାର ଦେଖି ତାଙ୍କର ସ୍ୱାମୀଙ୍କ ମନରେ କ୍ରୋଧ-ରାଗ-ଘୃଣା ଉଜ୍ଜ୍ୱଳିତ ହୋଇ ଉଠିଲା । କିପରି ମୀରାଙ୍କୁ ହତ୍ୟା କରାଯିବ—ଏହି କଳ୍ପନାରେ ତାଙ୍କର ଜୀବନ ଅଶାନ୍ତ ହେଲା । ଏହିଭଳି ଦୁର୍ବିସହ ଜୀବନଯାପନ କରି ସଂସାରରେ ରହିବାକୁ ମୀରାଙ୍କର ମନ ବିଦ୍ରୋହ କଲା । ଚତୁଃପାର୍ଶ୍ୱରେ ଶତ୍ରୁ-ପରିବେଷ୍ଟିତା ହୋଇ କେବଳ ତାଙ୍କର ନଣନ୍ଦ ଉଦା ବାଈ ଓ ଚମ୍ପା ଗୁର୍ମୈଲିଙ୍କୁ ନେଇ ସେ କିପରି ଠାକୁରସେବା କରି ପାରିବେ ଓ ଶାନ୍ତିରେ ରହିବେ, ତାର ପଥ ସେ ପାଇଲେ ନାହିଁ ।

ସେହି ସମୟରେ ଭାରତର ବିଖ୍ୟାତ ମହାତ୍ମା କବି ତୁଳସୀ ଦାସ କାଶୀରେ ରହି ସାଧନ ଭଜନ କରୁଥିଲେ ଏବଂ ରାମାୟଣ ରଚନା କରୁଥିଲେ । ଏହି ସମ୍ବାଦ ପାଇ ମୀରା ବାଈ ତାଙ୍କୁ ପରାମର୍ଶ ଦେବାକୁ ପତ୍ର ଲେଖିଥିଲେ । ସେହି ପତ୍ର ମୀରାଙ୍କର କର୍ମଚାରୀ ସୁଖପାଲ ମିଶ୍ର ତୁଳସୀ ଦାସଙ୍କ ନିକଟକୁ ନେଇ ଯାଇଥିଲେ । ପତ୍ରରେ ମୀରା ଲେଖିଥିଲେ—"ଶ୍ରୀ ଗିରିଧାରୀ ଶରଣମ୍ । ସ୍ୱସ୍ତି ଶ୍ରୀ ତୁଳସୀ ଦାସ ଗୋସାଇଁ ଜୀ ! ମୁଁ ଆପଣଙ୍କୁ ବହୁ ପ୍ରଣାମ ଜଣାଉଛି । ଆପଣଙ୍କୁ ମୋର ଏହି ନିବେଦନ ଯେ ମୋର ସମସ୍ତ ଦୁଃଖ ଶୋକ ଦୂର କରି ଦିଅନ୍ତୁ । ମୋର ସ୍ୱାମୀ ଓ ତାଙ୍କର ପରିଜନ ପରିବାରର ଆତ୍ମୀୟମାନେ ମୋ ଉପରେ ପ୍ରଚଣ୍ଡ ଆକ୍ରୋଶ ରଖି ଅତ୍ୟନ୍ତ ଉତ୍ପାତ ଆରମ୍ଭ କରିଅଛନ୍ତି । ମୁଁ ସାଧୁସଙ୍ଗ କଲେ ସେମାନଙ୍କର ଅସହ୍ୟ ହୁଏ । ମୁଁ ଭଜନ ଗୀତ ଗାଇଲେ ସେମାନଙ୍କର କର୍ଣ୍ଣକଟୁ ହୁଏ । ଏ ସଂସାର-ଅରଣ୍ୟରେ ମୋର ଇଷ୍ଟଦେବ ଗିରିଧରଲାଲ୍ କେବଳ ଏକମାତ୍ର ମିତ୍ର, ସହାୟ ଓ ରକ୍ଷାକର୍ତ୍ତା ଅଟନ୍ତି । ମୁଁ ସଂସାର ବିଷମ ଜ୍ୱାଳାରେ ଅଧୀର ନ ହୋଇ ଅବିଚଳିତ ଚିତ୍ତରେ ତାଙ୍କର ପାଦପଦ୍ମରେ ମତିକୁ ନିଶ୍ଚଳ ରଖିଅଛି । ଆପଣ ମୋର ପିତା ଓ ମାତା । ଆପଣ ଭକ୍ତବୃନ୍ଦଙ୍କ ସୁଖଦାୟୀ । ମୋର ଏହି ପରିସ୍ଥିତିରେ କର୍ତ୍ତବ୍ୟ କଅଣ, ତାହା ବୁଝାଇ ଲେଖନ୍ତୁ । ଇତି—ଶ୍ରୀଚରଣ ସେବିକା—ମୀରା ଦାସୀ ।

ତୁଳସୀ ଦାସ ପତ୍ର ପାଠ କରି ସୁଖପାଲ ମିଶ୍ର ବାର୍ତ୍ତାବହଙ୍କ ହସ୍ତରେ ମୀରାଙ୍କୁ ଉତ୍ତର ଦେଇଥିଲେ । ସେ ଲେଖିଥିଲେ, "ଶ୍ରୀରାମ ଶରଣଂ । ସ୍ୱସ୍ତି ଶ୍ରୀମତୀ ମୀରା ବାଈ, ତୁମର ପତ୍ର ପାଇଲି । ଯେ ବ୍ୟକ୍ତି ଭଗବତ୍ ବିଦ୍ୱେଷୀ ସେ ନିଜର ଅତି ଆତ୍ମୀୟ ହେଲେ

ମଧ୍ୟ ସେହି ସ୍ୱଜନମାନେ ସହସ୍ରଥର ଶତ୍ରୁବତ୍ ତ୍ୟାଜ୍ୟ ଅଟନ୍ତି । ଭକ୍ତ ପ୍ରହ୍ଲାଦ ବିଷ୍ଣୁଦ୍ୱେଷୀ ପିତାଙ୍କୁ, ବିଭୀଷଣ ଶ୍ରୀରାମଦ୍ୱେଷୀ ଜ୍ୟେଷ୍ଠଭ୍ରାତା ରାବଣ ରାକ୍ଷସଙ୍କୁ, ଭରତ ଶ୍ରୀରାମ ବିଦ୍ୱେଷିଣୀ ସ୍ୱ- ମାତା କୈକେୟୀଙ୍କୁ ପରିତ୍ୟାଗ କରିଥିବା କଥା ପୁରାଣରେ ବ୍ୟକ୍ତ ହୋଇଛି । ବୃନ୍ଦାବନ ଧାମର ଗୋପୀନୀ-ମାନେ ଶ୍ରୀକୃଷ୍ଣ ପ୍ରାପ୍ତି ନିମିତ୍ତ ସ୍ୱାମୀ, ବନ୍ଧୁ, କୁଟୁମ୍ବଙ୍କୁ ପରିତ୍ୟାଗ କରିଥିଲେ । ସେମାନଙ୍କର ଏହି ମହତ୍ ଆଚରଣ ଜଗତର ମଙ୍ଗଳ ଲାଗି ହୋଇଥିଲା । ଭଗବାନଙ୍କ ସହିତ ଯେଉଁ ଆତ୍ମୀୟଜନମାନଙ୍କର ପ୍ରୀତିଭାବ ନ ଥାଏ, ସେମାନଙ୍କ ସହିତ ତୁମର କୌଣସି ପ୍ରକାର ସମ୍ବନ୍ଧ ରଖିବା ଅକର୍ତ୍ତବ୍ୟ । ଯେଉଁମାନେ ମଙ୍ଗଳମୟ ସୃଷ୍ଟି-ସ୍ଥିତି-ପାଳନକର୍ତ୍ତା ଶ୍ରୀ ଭଗବାନଙ୍କ ସହିତ ମନୁଷ୍ୟର ସମ୍ବନ୍ଧକୁ ଘନିଷ୍ଠ କରାଇ ପାରନ୍ତି, ସେମାନଙ୍କ ସହିତହିଁ ତୁମର ନିତ୍ୟ ସମ୍ବନ୍ଧ । ଇତି ।

ଶୁଭାର୍ଥୀ—ତୁଳସୀ ଦାସ ।

ପତ୍ରପାଠ କରି ତୁଳସୀଙ୍କ ଉଦ୍ଦେଶ୍ୟରେ ମୀରା ପ୍ରଣାମ କରି ନିଜର କର୍ତ୍ତବ୍ୟ ଅବଧାରଣ କଲେ ମନରେ ତାଙ୍କର ଆନନ୍ଦର ପ୍ରେମବନ୍ୟା ବହିଲା । ମୀରା ଉଦାବାଈଙ୍କୁ କହିଲେ ଯେ ସେ ଆଉ ଚିତୋର ଗଡରେ ରହିବେ ନାହିଁ । ଉଦା ଚମ୍ପାରୁମେଲୀଙ୍କର ଦୁଃଖ ଉଚ୍ଛ୍ୱଳିତ ହେଲା । ସେମାନେ ମୀରାଙ୍କୁ ବହୁତ ଅନୁନୟ ବିନୟ କଲେ ମାତ୍ର ମୀରା ଅଚଳ—ଅଟଳ । ଗିରିଧର ଛଡ଼ା ତାଙ୍କର ପୃଥିବୀରେ କାହାପ୍ରତି ଆସ୍ଥା ନାହିଁ । ମୀରା ସଙ୍ଗୀନୀମାନଙ୍କୁ ସଂସାରର ଅସାରତା ବୁଝାଇଲେ । ଆମର ଜୀବନର ସୁଖ ଦୁଃଖ ଜଗତ ତରଙ୍ଗର

ତେଜ ଭଳ ଅଳୀକ । ଜୀବନ ଚିରନ୍ତନ ନୁହେଁ । ଜନ୍ମ ମୃତ୍ୟୁର ଦୁଃଖ ଏକ ପ୍ରହସନ । ଏ ପ୍ରହେଳିକାକୁ କାଟି ସେହି ପ୍ରାଣାରାମ ଶାନ୍ତି-ଧାମ ଶ୍ରୀକୃଷ୍ଣଙ୍କ ଚରଣ ତଳେ ନିଜକୁ ସମର୍ପଣ କଲେ, ମନୁଷ୍ୟ ଜୀବନର କଲ୍ୟାଣ ବୋଲି କହିଲେ । ମୀରାଙ୍କ କଥା ଶୁଣି ସଙ୍ଗିମା-ମାନେ କ୍ରନ୍ଦନ କଲେ । ମୀରା ସେମାନଙ୍କୁ ସୁଖି କରିବାକୁ ତାଙ୍କର ଭଜନଟିଏ ଗାଇଲେ :—

"ସାଧନ କର୍‌ନା ଚାହିଏ ମନୁଆଁ ଭଜନ କର୍‌ନା ଚାହି ।
ପ୍ରେମ ଲଗାନ୍ ଚାହିଏ ମନୁଆଁ ପ୍ରୀତ କର୍‌ନା ଚାହି ।
ନିତ୍ ନାହାନେସେ ହରି ମିଲେତୋ ଜଲ ଜନ୍ତୁ ହୋୟି ।
ଫଲମୂଲ ଖାକେ ହରି ମିଲେତୋ ବାଦୁର ବାନ୍ଦରାୟେ ।
ତିରଣ୍ ଭଖ୍‌ନେସେ ହରି ମିଲେ ତୋ ବହୁତ ମୃଗୀ ଅଜା ।
ସ୍ତ୍ରୀ ଛୋଡ୍‌ନେସେ ହରି ମିଲେ ତୋ ବହୁତ ରହେହାୟ୍ ଖୋଜା ।
ଦୁଧ ପିନେସେ ହରି ମିଲେତୋ ବହୁତ ବସ୍ତ-ବାଲା
ମୀରା କହେ ବିନା ପ୍ରେମ୍‌ସେ ମିଲେ ନହିଁ ନନ୍ଦଲାଲା ।"

ରାଣା କୁମ୍ଭ ମୀରାଙ୍କୁ ତାଙ୍କର ମନ୍ଦିରରେ ପ୍ରକାଶ୍ୟରେ ଭଜନ କୀର୍ତ୍ତନ କଥା କହି ଏଥିରେ ରାଜବଂଶର ସମ୍ମାନ ଊଣା ହେବା ବିଷୟରେ ବହୁତ ବୁଝାଇଲେ । ମୀରା କହିଲେ "ମହାରଣା ! ମୀରାର କ୍ଷତ୍ରିୟ କୁଳରେ ଜନ୍ମ । ଆତ୍ମସମ୍ମାନର ଅର୍ଥ—ନାରୀସମ୍ମାନର ଅର୍ଥ ସେ ବୁଝେ । ଜୀବନରେ ମୀରା ଅନ୍ୟାୟ କଦାପି କରି ନାହିଁ । ମହାରଣା ମୋ ସମ୍ବନ୍ଧରେ ଯେବେ ଏପରି

ଅଯୌକ୍ତିକ ଭର୍ତ୍ସନା ପାପ-ସନ୍ଦେହ ରଖି ପାପଚିନ୍ତା କରନ୍ତି, ତେବେ ଚିତୋର ରାଜବଂଶର ସମ୍ମାନ ରକ୍ଷା କରିବା ପାଇଁ ମୁଁ ଚିତୋର ରାଜଗୃହରେ ରହିବି ନାହିଁ । ରାଜବାଟୀରେ ମୋର ସ୍ଥାନ ନାହିଁ ।

ମୀରା ଅନ୍ଧକାର ବର୍ଷଣ ନିଶୀଥରେ ଗୃହତ୍ୟାଗିନୀ ହେଲେ । ତାଙ୍କୁ ଗୋଟିଏ କୃଷ୍ଣକାୟ ବାଳକ ପଥପ୍ରଦର୍ଶକ ହୋଇ ନଦୀ ପାର କରାଇନେଇ ଯାଇ ବୃନ୍ଦାବନରେ ପହଞ୍ଚାଇ ଦେଇଥିଲେ । ସେଠାରେ ସେ ବୈଷ୍ଣବ ସନ୍ୟାସୀ ଶ୍ରୀ ଜୀବଗୋସ୍ୱାମୀଙ୍କ ପୂଜିତ ଗୋପାଳକୃଷ୍ଣଙ୍କ ମନ୍ଦିରକୁ ଯାଇ ଦେବଦର୍ଶନ କଲେ । ପୁଣି ଶ୍ରୀ ଜୀବଗୋସ୍ୱାମୀଙ୍କ ମଠକୁ ଯାଇ ଗୋସ୍ୱାମୀଙ୍କ ସହିତ ସାକ୍ଷାତ୍ କରିବାକୁ ସମ୍ବାଦ ଦେଲେ । ଶ୍ରୀପାଦ ଶ୍ରୀ ଜୀବଗୋସ୍ୱାମୀ ଜଣେ ସନ୍ନ୍ୟାସୀଙ୍କ ହାତରେ ଖବର ଦେଲେ ଯେ ସେ ଗୃହତ୍ୟାଗୀ ସନ୍ନ୍ୟାସୀ । ପ୍ରକୃତି ଦର୍ଶନ କରିବା ତାଙ୍କ ଧର୍ମରେ ନିଷିଦ୍ଧ । ସେ ନାରୀକୁ ସମ୍ଭାଷଣ କରିବେ ନାହିଁ । ଏକଥା ଶୁଣି ମୀରା ବଡ଼ ଦୁଃଖିତା ହୋଇ ସମ୍ବାଦଦାତାଙ୍କୁ କହିଲେ, "ବାବା ତୁମେ କହ, ମୀରାଦାସୀ ଜାଣେ ଶ୍ରୀ ଗୋବିନ୍ଦଜୀ ବୃନ୍ଦାବନଧାମରେ ଏକମାତ୍ର ପୁରୁଷ ଓ ଅନ୍ୟ ସ୍ଥାନର ଜଙ୍ଗମ ପ୍ରାଣୀମାନେ ସମସ୍ତେ ପ୍ରକୃତି ଅଟନ୍ତି । ବୃନ୍ଦାବନରେ ଶ୍ରୀ ଗୋବିନ୍ଦଙ୍କର ଅଦ୍ୱିତୀୟ ପୁରୁଷତ୍ୱର ପ୍ରତିଦ୍ୱନ୍ଦୀରୂପେ କେହି ଥିବା କଥା ଶୁଣି ମୁଁ ବିସ୍ମିତା ହେଉଛି । ଏହା ନୂତନ ସମ୍ବାଦ ।

ଏହି ସମ୍ବାଦ ପାଇ ଶ୍ରୀଜୀବ ଗୋସ୍ୱାମୀ ନିଜର ପୌରୁଷ ଅହଂକାର ପ୍ରକାଶରେ ଲଜ୍ଜିତ ହେଲେ । ସେ ଅନୁତପ୍ତ ହୃଦୟରେ ଆଶ୍ରମରୁ ଆସି ମୀରାଙ୍କ ସହିତ ସାକ୍ଷାତ୍ କଲେ । ଶ୍ରୀଜୀବ ଗୋସ୍ୱାମୀ କହିଲେ "ମା ! ଆପଣଙ୍କର ଅତୁଳନୀୟ ପ୍ରେମ

ଭକ୍ତ କଥା ଶୁଣିଅଛୁ । ଆଜ ଆପଣଙ୍କୁ ଦର୍ଶନ କରି ଧନ୍ୟ ହେଲି ! ଆପଣ ବିଗ୍ରହ ଦର୍ଶନ କରନ୍ତୁ ।"

ମୀରା ବୃନ୍ଦାବନରେ ରହି ସାଧନ ଭଜନ କୀର୍ତ୍ତନରେ ତନ୍ମୟୀ ରହିଲେ । ତାଙ୍କର ନିତ୍ୟ ସମାଧି ହେଉଥିଲା । ସେ ଦେହ ମନ ଜ୍ଞାନଶୂନ୍ୟା ହୋଇ ଅତିନ୍ଦ୍ରିୟ ଲୋକରେ ଅବସ୍ଥାନ କରୁଥିଲେ । ତାଙ୍କର ଆତ୍ମା ଭକ୍ତି ସରୋବରରେ ସରୋଜନୀ ଭଳି ସୁବାସିତା ହେଲା । ସେହି ସୌରଭରେ ଅଗଣିତ ବୈଷ୍ଣବ ଭକ୍ତ ନରନାରୀମାନେ ତାଙ୍କର ଚରଣ ଦର୍ଶନ କରିବାକୁ ଆସିଲେ ।

ଚିତୋରଗଡ଼ରେ ରାଣୀ ମୀରାବାଈଙ୍କ ଅନ୍ତର୍ଦ୍ଧାନ ବାର୍ତ୍ତା ଜନସାଧାରଣଙ୍କୁ ଶୋକର ତମିର ଆବରଣରେ ଆବୃତ କଲା । ପ୍ରଜାମାନେ ମୀରାଙ୍କ ଭଜନ ଗାନ କରିବାକୁ ଲାଗିଲେ । ଯେଉଁ ମନ୍ଦିର ନିର୍ମାଣ କରି ମୀରା ନିତ୍ୟ ଦେବତାଙ୍କ ପୂଜାର୍ଚ୍ଚନା କରୁଥିଲେ ସେହି ମନ୍ଦିରର ଘଣ୍ଟା-ନିସ୍ୱନ ନୀରବ ହେଲା । ରାଜପୁରୀରେ ଶୋକଛାୟା ଖେଳିଗଲା । ମୀରାଙ୍କର ଆତ୍ମୀୟ ଓ ବ୍ରାହ୍ମଣମାନେ ଦେଶରେ ଅନାବୃଷ୍ଟି ହେବାରୁ ତାଙ୍କୁ ପୁଣି ସଂସାର ଆଶ୍ରମକୁ ଫେରାଇ ଆଣିବାକୁ ବୃନ୍ଦାବନକୁ ଯାଇଥିଲେ । ମାତ୍ର ମୀରା ତାଙ୍କ ପ୍ରିୟତମ ଶ୍ରୀ ଗିରିଧାରୀ ଲାଲଙ୍କୁ ଛାଡି ସଂସାରକୁ ଯିବାକୁ ନାରାଜ ହେଲେ ।

ବୃନ୍ଦାବନରେ ପଥେ ପଥେ ବୁଲି ମୀରା ଭଜନ ଗାନ ଗାଇ ବୁଲିଲେ । ମାଧୁକରୀ କରି ଜୀବନ ବଞ୍ଚାଇଲେ । ସର୍ବଦା କୃଷ୍ଣନାମ କୃଷ୍ଣଧ୍ୟାନ କୃଷ୍ଣ କଥା କହି ତାଙ୍କର ଆନନ୍ଦ ହେଉଥିଲା । ସେ ନିଜକୁ ଚିତୋର ରାଜସ୍ଥାନର ରାଣୀ ବୋଲି ଭାବୁ ନ ଥିଲେ । କୃଷ୍ଣଙ୍କ ଦାସୀ ବୋଲି ନିଜକୁ ଭାବୁଥିଲେ । ତାଙ୍କର ଭକ୍ତି ରାଗାନୁଗା ଥିଲା । ସେ ଭଗବାନଙ୍କୁ ସ୍ୱାମୀ ପୁତ୍ର, ପିତା, ବନ୍ଧୁ, ସର୍ବ ଭାବରେ

ଦେଖୁଥିଲେ । ତାଙ୍କର ପରିବାର ଆତ୍ମୀୟ ତାଙ୍କୁ ତାଙ୍କ ଲକ୍ଷ୍ୟରୁ ବିଚ୍ୟୁତା କରି ପାରିଲେ ନାହିଁ । ଶେଷରେ ସେ ଗୋବିନ୍ଦଜୀଙ୍କ ମନ୍ଦିରରେ କୀର୍ତ୍ତନ କରୁ କରୁ ତାଙ୍କ ମୂର୍ତ୍ତିରେ ବିଲୀନ ହୋଇଗଲେ । ତାହା ପରେ ତାଙ୍କୁ ଆଉ କେହି ଦେଖିଲେ ନାହିଁ । ତାଙ୍କର ଆତ୍ମବିପ୍ଳବ, ଭାବ ବିପ୍ଳବ, ଧର୍ମବିପ୍ଳବର ଇତିହାସ ଭାରତୀୟ ନାରୀ ଜଗତରେ ଅମୂଲ୍ୟ ଜୀବନର ଗାଥା ରଚନା କରିଯାଇଅଛି । ମୀରାଙ୍କର ଭଜନାବଳୀ ରାଜସ୍ଥାନର ଗୃହେ ଗୃହେ ବୋଲାହୁଏ । ପଶ୍ଚିମ ଓ ଉତ୍ତର ଭାରତବରେ ଏହି ଭକ୍ତିମତୀ ନାରୀଙ୍କର ଭଜନ ଭକ୍ତ, ସାଧକମାନେ ସୁଲଳିତ କଣ୍ଠରେ ଦେବସାନ୍ନିଧରେ ଗାନ କରିଆନ୍ତି ।

ଯେଉଁ ନାରୀମାନେ ଅତି ମାନସିକା, ନିଜର ଚିନ୍ତା ରାଜ୍ୟରେ ବିପ୍ଳବ କରିଥାନ୍ତି, ସେମାନେ ବିପ୍ଳବିଣୀ । ସେମାନେ ସଂସାର, ରାଷ୍ଟ୍ରସମାଜ, ପରିବାର ସହିତ ଆତ୍ମିକ ସଂଗ୍ରାମ କରି ଯଶସ୍ୱିନୀ ହୋଇଥାନ୍ତି । ମୀରା ବାଈ ସେହି ଦୃଷ୍ଟିରୁ ଭାରତର ଗୋଟିଏ ବିଶିଷ୍ଟ ବିପ୍ଳବିଣୀ ନାରୀ ଅଟନ୍ତି । ସେ ଯେହି ଅନ୍ଧକାର ଯୁଗରେ ଯେପରି ଭାବରେ ସାହସିକତା ଦେଖାଇ ନିଜର ଲକ୍ଷ ଓ ଧେୟ ସାଧନ ନିମନ୍ତେ ଶତ ବିଧିନିଷେଧ ଶୃଙ୍ଖଳା ଛିନ୍ନ କରି ଆତ୍ମାର ଆହ୍ୱାନରେ, ଦେବତାର ପ୍ରସାଦରେ ନିଜର ଚିର ଆଶ୍ରୟ ରାଜନିକେତନକୁ ଓ ନିଜର ବିଳାସ ବିଭବ ତ୍ୟାଗ କରି ନିଜର ଏବଂ ଜଗତର ମଙ୍ଗଳସାଧନ କାମନାରେ କଷ୍ଟସହିଷ୍ଣୁତା ଗ୍ରହଣକରି ବୃନ୍ଦାବନର ଅପରିଚିତ ସ୍ଥାନକୁ ଆସିଲେ, ସେ ଯୁଗରେ ତାହା ବିରଳ । ସେ ମଧ୍ୟ ଦ୍ୱାରକା ପ୍ରଭୃତି ଅନ୍ୟାନ୍ୟ ତୀର୍ଥ ପର୍ଯ୍ୟଟନ ପଦବ୍ରଜରେ କରିଥିଲେ । ତାଙ୍କର ଦେହ ଓ ମନର ଯେ ଅସୀମ

ଶକ୍ତି ତାହା କଳନା କରିବାକୁ ଏ ଯୁଗ ନରନାରୀଙ୍କର ଶକ୍ତି ନାହିଁ । ଯେପରି ସେ ଯୁଗର ପ୍ରସିଦ୍ଧ ମନ୍ଦିର ନିର୍ମାତାମାନଙ୍କର ଅସାଧାରଣ ଧୈର୍ଯ୍ୟ, ସହିଷ୍ଣୁତା ଓ କୃଚ୍ଛ୍ର ସାଧନା ଏ ଯୁଗର ବିଜ୍ଞାନା-ଲୋକ ପ୍ରାପ୍ତ ଇଞ୍ଜିନିୟରମାନଙ୍କ ପକ୍ଷରେ କଳନା କରିବା ମଧ୍ୟ ସମ୍ଭବପର ନୁହେଁ, ସେହିପରି ମୀରା-ଚରିତ ଏକ ଆଶ୍ଚର୍ଯ୍ୟ କଥା ।

ନାରୀଜାତି ନିଜର ମାନସିକ ତଥା ଶାରୀରିକ ଉନ୍ନତି ସାଧନ ନ କଲେ ନିଜର ଆଦର୍ଶ ଓ ଧେୟପାଇଁ ମୀରା ବାଈଙ୍କ ଭଳି ଆତ୍ମବଳୀର ଦାନ ତାହା ପକ୍ଷରେ ସମ୍ଭବ ହୋଇ ପାରିବ ନାହିଁ । ତେଣୁ ଏ ଯୁଗର ନାରୀ ତାର ଆତ୍ମବିକାଶପାଇଁ ପଥ ଖୋଜିବା ଉଚିତ ।

# ରାଣୀ ଅହଲ୍ୟା ବାଈ

ଭାରତବର୍ଷରେ ଯେଉଁ ବୀରନାରୀମାନେ ଜନ୍ମିଥିଲେ ସେହି ବୀରନାରୀମାନଙ୍କ ମଧ୍ୟରେ ରାଣୀ ଅହଲ୍ୟା ବାଈଙ୍କ ନାମ ଭାରତର ସବୁ ଅଞ୍ଚଳର ଜନପଦବାସୀ ଜାଣନ୍ତି । ଭାରତବର୍ଷର ମହାରାଷ୍ଟ୍ର ଦେଶ ବୀରଭୂମି । ଶିବାଜୀଙ୍କ ଭଳି ବୀର ପୁରୁଷ ଭାରତର ରାଷ୍ଟ୍ର ଜୀବନର ଶୋଚନୀୟ ପରାଭବ ବେଳେ ନିଜର ଅନୁପମ ବୀରତ୍ୱ ଓ ବୁଦ୍ଧିମତ୍ତା ତଥା ସାହସିକତାଦ୍ୱାରା ଦୁର୍ଦ୍ଧର୍ଷ ମୋଗଲରାଜାମାନଙ୍କୁ ପରାଜିତ କରି ହିନ୍ଦୁ ରାଜତ୍ୱକୁ ସ୍ୱାଧୀନ କରି ରଖିଥିଲେ । ତାଙ୍କ ଭୟରେ ମୋଗଲ ଓ ପଠାଣ ରାଜାମାନେ ମହାରାଷ୍ଟ୍ର ଅଧ୍ୟୁସିତ ଦେଶମାନଙ୍କରେ ପ୍ରବେଶ କରି ପାରୁ ନ ଥିଲେ । ମହାରାଷ୍ଟ୍ରର ନଦୀ ଓ ପର୍ବତମୟ ଅଞ୍ଚଳଗୁଡ଼ିକରେ ଦୁର୍ବଳ, ଭୀରୁ ଓ କାପୁରୁଷମାନଙ୍କର ସ୍ଥାନ ନ ଥିଲା । ଏହି ମହାରାଷ୍ଟ୍ର ଭୂମି ଜନ୍ମ ଦେଇଥିଲା ରାଣୀ ଅହଲ୍ୟା ବାଈ, ଝାଁସୀର ମହାରାଣୀ ଲକ୍ଷ୍ମୀ ବାଈ ଓ ମହାରାଷ୍ଟ୍ରୀୟ ରାଣୀ ବାଇଜା ବାଈଙ୍କୁ ।

ରାଣୀ ଅହଲ୍ୟା ଶିବାଜୀଙ୍କ ପ୍ରତିଷ୍ଠିତ ବଂଶର କନ୍ୟା । ତାଙ୍କର ପିତା ଆନନ୍ଦ ରାଓଙ୍କର ଗୌରବ ବିଭବ ଓ ଧନାଢ୍ୟତା ଅସ୍ତମିତ ହୋଇଥିଲେ ସୁଦ୍ଧା ତାଙ୍କର ବଂଶାଭିଜାତ୍ୟ ହେତୁ ସେ ସର୍ବତ୍ର ସମ୍ମାନିତ ହେଉଥିଲେ । ଅହମ୍ମଦ୍‌ନଗରର ପାଥରଡ଼ି ବୋଲି ଏକ ଗ୍ରାମ ଅଞ୍ଚଳରେ ବାସକରୁଥିଲେ ଆନନ୍ଦ ରାଓ । ଆନନ୍ଦ ରାଓ ସିନ୍ଧିଆ ଶିବାଜୀଙ୍କ ବଂଶଧର ।

ଅହଲ୍ୟା ପିତାଙ୍କର ନୟନ ପିତୁଳୀ ଥିଲେ । ଅତି ଆଦରରେ ଲାଳିତା ପାଳିତା ଏହି କନ୍ୟାଙ୍କର ସୁଗୁଣ ବାଲ୍ୟକାଳରୁ ଜଣାପଡ଼ିଥିଲା । ତାଙ୍କର ଧର୍ମଭାବ ଓ ଦୟାଭାବ ବାଲ୍ୟକାଳରେ ନାନା ଆଚରଣରେ ପରିସ୍ଫୁଟ ହେଉଥିଲା । ଦୁଃଖିରଙ୍କିଙ୍କୁ ଭିକ୍ଷା ଦବା ଓ ବ୍ରତପାର୍ବଣ ଉତ୍ସବରେ ଦେବଦେବୀଙ୍କର ପୂଜା ଅର୍ଚ୍ଚନାରେ ଆନନ୍ଦ ବୋଧକରିବା, ବିଦ୍ୟାରେ ଅନୁରାଗ ରଖି ଏକ ଚିତ୍ତରେ ଶିକ୍ଷଣୀୟ ବିଷୟକୁ ଆୟତ୍ତ କରିବାରେ ତାଙ୍କର ଉତ୍ସାହ ଦେଖା ଯାଉଥିଲା । ଦରିଦ୍ର ଲୋକେ ଅହଲ୍ୟାଙ୍କଠାରୁ ଦାନ ଗ୍ରହଣ କରି ତାଙ୍କୁ ବହୁତ କଲ୍ୟାଣ କରୁଥିଲେ । ସେ ଯେ ଦିନେ ସାଧାରଣ ଘରୁ ଯାଇ ଇନ୍ଦୋରର ରାଣୀ ପଦରେ ଅଧିଷ୍ଠିତା ହେବେ ଏ କଥା କେହି କେବେ କଳ୍ପନା କରି ନ ଥିଲେ ।

ମହାରାଜା ମହ୍ଲାର ଓ ହୋଲ୍‌କାର ମହାରାଷ୍ଟ୍ର ଅଧିପତି । ଇନ୍ଦୋର ତାଙ୍କର ରାଜଧାନୀ ଥିଲା । ସେକାଳରେ ଆଖପାଖ ଅଞ୍ଚଳରେ ସାମନ୍ତ ରାଜାମାନଙ୍କ ଭିତରେ ବିବାଦ ଲାଗିଥିଲା । ମହ୍ଲାର ରାଓ ରାଜ୍ୟ ବିଜୟ କରିବାକୁ ଯାଉଥିଲେ । ଦିନେ ସେ ଯୁଦ୍ଧାଭିଯାନରୁ କ୍ଳାନ୍ତ ହୋଇ ଫେରି ପାଥରଡ଼ି ବୋଲି ଏକ ଗ୍ରାମରେ ରାତ୍ରିବାସ ପାଇଁ ସୈନ୍ୟସାମନ୍ତମାନଙ୍କ ସହିତ ଶିବିର ସ୍ଥାପନ କରିଥିଲେ । ମହାରାଜାଙ୍କୁ ଭେଟିବା ପାଇଁ ଉପଢ଼ୌକନ ଘେନି ବହୁ ପ୍ରଜା ଶିବିରକୁ ଆସିଥିଲେ । ଗ୍ରାମର ବହୁ ବାଳକ ବାଳିକା କୌତୁହଳୀ ହୋଇ ରାଜଦର୍ଶନକୁ ଗଲବେଳେ ବାଳିକା ଅହଲ୍ୟା ବାଈ ମଧ୍ୟ ରାଜଦର୍ଶନ କରିବାକୁ ଗୃଲିଗଲେ । ମହାରାଜା ସେହିଠାରେ ରାଜଦରବାର କଲେ । ଅହଲ୍ୟା ବାଈ ସେହି ଦର୍ଶନେଚ୍ଛୁ ବାଳକ ବାଳିକାମାନଙ୍କ ଗହଣରେ ଯାଇ ରାଜସନ୍ନିଧାନରେ ପହଞ୍ଚିଲେ । ଅହଲ୍ୟା ସୁନ୍ଦରୀ ବାଳିକା ଥିଲେ ।

ମହାରାଜା ହୋଲ୍‌କାର ତାଙ୍କୁ ଦେଖି ପାଖକୁ ଡାକି ପରିଚୟ ପଚ୍ଛରିଲେ । ଅନ୍ୟ ଲୋକମାନେ ଓ ଆନନ୍ଦ ରାଓ ସିନ୍ଧିୟା ଝିଅର ପରିଚୟ ଦେବା ଆଗରୁ ଅହଲ୍ୟା ତାଙ୍କର ନିଜ ପିତାମାତା ପରିଚୟ ଓ ତାଙ୍କ ନାମ ଧାମ ମହାରାଜାଙ୍କୁ କହିଲେ । ଇନ୍ଦୋର ଅଧିପତି ଅହଲ୍ୟାଙ୍କର ସାହସିକ ଭାଷଣ ଓ ରୂପଲାବଣ୍ୟ ଦେଖି ମୁଗ୍ଧ ହେଲେ । ସେ ମନେ ମନେ ସଂକଳ୍ପ କଲେ ଯେ ଏ ସୁନ୍ଦରୀ ଗୁଣବତୀ କନ୍ୟାଟିକୁ ନିଜର ପୁତ୍ର ଯୁବରାଜ ଖାଣ୍ଡେରାଓ ହୋଲ୍‌କାରଙ୍କୁ ବିବାହ କରାଇ ଦେବେ । କାରଣ କନ୍ୟାଟି ରୂପରେ ସୁଲକ୍ଷଣା ଥିଲା ।

କିଛିଦିନ ପରେ ଆନନ୍ଦ ରାଓ ସିନ୍ଧିଆଙ୍କ ନିକଟକୁ ମହାରାଜା ତାଙ୍କର ପୁତ୍ର ବିବାହ ସମ୍ବନ୍ଧରେ ପ୍ରସଙ୍ଗ ଉତ୍ଥାପନ କରିବାକୁ ଡଗର ପଠାଇଲେ । ଦୂତ ମୁଖରୁ ଏ ସମ୍ବାଦ ପାଇ ଅହଲ୍ୟାଙ୍କ ପିତାମାତା ଅତିଶୟ ଆଶ୍ଚର୍ଯ୍ୟାନ୍ୱିତ ଏବଂ ଆନନ୍ଦିତ ହେଲେ । ଗୃହଁ ଗୃହଁ ଏହି ସମ୍ବାଦ ଗ୍ରାମରୁ ଗ୍ରାମାନ୍ତରରେ ପ୍ରଚ୍ଛରିତ ହୋଇଗଲା । ପାଥରଡ଼ି ଲୋକେ ଏ ପ୍ରସ୍ତାବରେ ବଡ଼ ଆନନ୍ଦିତ ହେଲେ । ଆନନ୍ଦ ରାଓ ଦୂତ ହସ୍ତରେ ନିଜର ସ୍ୱୀକୃତି ଜଣାଇଲେ । ଅହଲ୍ୟାଙ୍କୁ ତାଙ୍କର ଶିଶୁ ବୟସରେ ଜଣେ ଗଣକ ମଧ୍ୟ ସେ ରାଜରାଣୀ ହେବେ ବୋଲି ଭବିଷ୍ୟତ୍‌ବାଣୀ କରିଥିଲା । ତାହା ଅଭାବନୀୟ ଭାବରେ ସଫଳ ହେବା ଦେଖି ଅହଲ୍ୟାବାଈଙ୍କ ପିତାମାତା ସୁଖି ହେଲେ । ଏହି ଭାଗ୍ୟବତୀ ବାଳିକା ଶେଷରେ ରାଜରାଣୀ ହୋଇ ଦେଶଶାସନ କରିଥିଲେ ।

ଯଥା ସମୟରେ ମହାରାଜା ଶିବିକା ଦାସଦାସୀ, ଅଳଙ୍କାର ଇତ୍ୟାଦି ଆନନ୍ଦ ରାଓଙ୍କ ଗୃହକୁ ପଠାଇଲେ । ମାତ୍ର ନବମ ବର୍ଷ

ବୟସରେ ଏହି ବାଳିକା ବଧୂ ଶ୍ୱଶୁରାଳୟକୁ ଯାଇଥିଲେ ଏବଂ ରାଜଗୃହରେ ତାଙ୍କର ଉଦ୍‌ବାହ କାର୍ଯ୍ୟ ସମ୍ପୂର୍ଣ୍ଣ ହୋଇଥିଲା ।

ନାରୀର ଭାଗ୍ୟ ବଡ଼ ବିଚିତ୍ର । ଦରିଦ୍ର କୃଷକ କନ୍ୟା ଇନ୍ଦୋରର ରାଜବଧୂ ଯୁବରାଣୀ ପଦରେ ଅଭିଷିକ୍ତା ହେଲେ । ଶାଶୁ ଗୌତମା ଦେବୀ ନିଜର ପରମ ରୂପବାନ୍ ଓ ଗୁଣବାନ୍ ପୁତ୍ର ପାଇଁ ଗୋଟିଏ ଦରିଦ୍ର କନ୍ୟାର ନିର୍ବାଚନ ଏବଂ ବିବାହକୁ ପସନ୍ଦ କରି ନ ଥିଲେ, ମାତ୍ର ଅହଲ୍ୟାଙ୍କ ସୁନ୍ଦର ସୁଗଠିତ ରୂପକାନ୍ତି ଓ ସୁନ୍ଦର ଗୁଣାବଳୀର ପରିଚୟ ଲାଭ କରି ସେ କୃତାର୍ଥା ହେଲେ । ଅହଲ୍ୟା ସାଧାରଣ ଗୃହସ୍ଥ ଘରର କନ୍ୟା ହୋଇ ରାଜବଧୂ ପଦରେ ଅଧିଷ୍ଠିତା ହୋଇ ମନରେ ତିଳେ ହେଲେ ଗର୍ବ ବୋଧ କରୁ ନ ଥିଲେ । ଶାଶୁ ଶ୍ୱଶୁରଙ୍କ ପ୍ରତି ତାଙ୍କର ଅତ୍ୟନ୍ତ ଭକ୍ତି ଥିଲା । ଦାସ ଦାସୀଙ୍କ ପ୍ରତି ଶ୍ରଦ୍ଧା ଥିଲା । ସେ କଦାପି କାହାକୁ କ୍ରୋଧ ପ୍ରକାଶ କରୁ ନ ଥିଲେ । ବିନୀତ ଥିଲା ତାଙ୍କର ଆଚରଣ, ନିବେଦନ ଥିଲା ନମ୍ର । ବାଲ୍ୟକାଳରୁ ତାଙ୍କର ମାତା ତାଙ୍କୁ ରାମାୟଣ, ମହାଭାରତ ଓ ଅନ୍ୟାନ୍ୟ ପୁରାଣ କଥା କହି ଶୁଣାଇଥିଲେ । ସେଥିପାଇଁ ତାଙ୍କ ଚିତ୍ତରେ ଭାରତବର୍ଷର ନାରୀମାନଙ୍କର ଶୁଦ୍ଧ ସଂସ୍କାର ଜ୍ୱଳନ୍ତ ଭାବରେ ଜାଗ୍ରତ ଥିଲା । ସେ ଭଗବାନ୍‌ଙ୍କ ପ୍ରତି ଭକ୍ତିମତୀ ଥାଇ ପ୍ରତିଦିନ ସନ୍ଧ୍ୟା ଆହ୍ନିକ, ଜପ ତପ, ପୂଜା ପାଠ କରୁଥିଲେ ଓ ଭାଗବତ ଶ୍ରବଣ କରୁଥିଲେ । ରାଜପରିବାରର ଭୃତ୍ୟ ଦାସୀମାନଙ୍କୁ ସେ ପରାମର୍ଶ ଦେଇ କରଣୀୟ କାର୍ଯ୍ୟ ଶିକ୍ଷା ଦେଉଥିଲେ; ମାତ୍ର ସେମାନେ ତାଙ୍କୁ ଦରିଦ୍ର ବୋଲି ଅବଜ୍ଞାଚକ୍ଷୁରେ ଦେଖୁ ନ ଥିଲେ । ତାଙ୍କର ଶାଶୁ ଅହଲ୍ୟାଙ୍କୁ କିଛି କାର୍ଯ୍ୟ ନ କରି ଆନନ୍ଦରେ, ବିଳାସରେ କାଳ କାଟିବାକୁ କହନ୍ତି । ମାତ୍ର ଅହଲ୍ୟା

ଗୃହର ସମସ୍ତ କର୍ମ ସମ୍ପାଦନ କରୁଥାନ୍ତି । ଶାଶୁ ଶ୍ୱଶୁରଙ୍କୁ ଅହଲ୍ୟା ନିଜର ପିତୃମାତୃ ତୁଲ୍ୟ ଶ୍ରଦ୍ଧା ଓ ଭକ୍ତି କରୁଥିଲେ । ରାଜପୁରର ସମସ୍ତ ପରିଜନଙ୍କୁ ଅହଲ୍ୟା ସ୍ନେହମଧୁର ବଚନରେ ତୃପ୍ତ କରୁଥିଲେ ।

ମହାରାଜା ମହ୍ଲାର ରାଓ ଅହଲ୍ୟାଙ୍କୁ କନ୍ୟାବତ୍ ସ୍ନେହ କରୁଥିଲେ ଏବଂ ରାଜନୈତିକ ବିଚାର କାର୍ଯ୍ୟରେ ଅହଲ୍ୟାଙ୍କର ବୁଦ୍ଧି ବିବେଚନା, ପରାମର୍ଶ ନେଉଥିଲେ । ଅଳ୍ପ ବୟସରେ ଅହଲ୍ୟା ସଂସାର ଓ ରାଜନୈତିକ ବିଚାର ଜ୍ଞାନରେ ଅସାଧାରଣ ଜ୍ଞାନ ଅର୍ଜନ କରିଥିଲେ । ରାଜା ଦେଖିଲେ ସେ ଉପଯୁକ୍ତ ପୁତ୍ରବଧୂ ବାଛି ଆଣିଛନ୍ତି । ରାଜା ଉଦ୍ଧତ ଭାବରେ ରାଜକାର୍ଯ୍ୟ କରୁଥିବାରୁ ତାଙ୍କୁ ପ୍ରଜାମାନେ ବିରକ୍ତ ହେଉଥିଲେ । ତାଙ୍କର କୋପ ପ୍ରକୃତି ଜାଣି ଅହଲ୍ୟାବାଈ ତାଙ୍କ ବୁଝାଇ ସୁଝାଇ ମଧୁର କଥାରେ ଆବେଦନ କରି ରାଜକାର୍ଯ୍ୟ ପରିଚାଳନାରେ ସହାୟତା କରୁଥିଲେ । ତେଣୁ ରାଜାଙ୍କର ଖ୍ୟାତି ବୃଦ୍ଧି ଲାଭ କଲା । ତାହା ସହିତ ଅହଲ୍ୟାବାଈଙ୍କର ସୁନାମ ରାଜ୍ୟବ୍ୟାପୀ ପ୍ରଚାରିତ ହେଲା ।

ଅହଲ୍ୟା ଖୁବ୍ ନିଷ୍ଠା ସହିତ ନିତ୍ୟ ଦେବଦେବୀଙ୍କୁ ଉପାସନା କରୁଥିଲେ । ପ୍ରତ୍ୟହ ସେ ତାଙ୍କର ମନ୍ଦିରକୁ ଯାଇ ଇଷ୍ଟ ପ୍ରଣାମ ଓ ଆରାଧନା କଲେ ଭୋଜନ କରନ୍ତି । ତାଙ୍କର ଦାମ୍ପତ୍ୟ ଜୀବନ ଅତୀବ ମଧୁର ଥିଲା । ସେ ସ୍ୱାମୀଙ୍କୁ ଭକ୍ତି କରୁଥିଲେ ଏବଂ ତାଙ୍କର ଭୋଜନ ପୂର୍ବରୁ କଦାପି ଭୋଜନ କରୁ ନ ଥିଲେ । ସ୍ୱାମୀଙ୍କର ପରିଚର୍ଯ୍ୟା କରିବାକୁ ସେ ପ୍ରିୟକର୍ମ ମଣୁଥିଲେ । ତାଙ୍କର ସ୍ୱାମୀ ବଡ଼ ରୂପବାନ ଗୁଣବାନ୍ ଓ ବୀର ଥିଲେ । ସେ ରାଜବିଦ୍ରୋହୀ

ଜାଠଜାତିର ଦସ୍ୟୁମାନଙ୍କ ବିରୁଦ୍ଧରେ ଯୁଦ୍ଧ କରିବାକୁ ଯାଇ ପ୍ରାଣ ହରାଇଥିଲେ । ଖାଣ୍ଡେରାଓ ବିବାହର ନବମ ବର୍ଷ ପରେ ଗୋଟିଏ ପୁତ୍ର ଓ ଗୋଟିଏ କନ୍ୟା ରଖି ଇହଲୀଳା ସମ୍ବରଣ କଲେ । ଅହଲ୍ୟା ବିଧବା ହେଲେ । ତାଙ୍କର ଶୋକର ସୀମା ରହିଲା ନାହିଁ । ସେ ଯୁଗରେ ସତୀଦାହ ପ୍ରଥା ପ୍ରଚଳିତ ଥିଲା । ତେଣୁ ଯୁବରାଣୀ ଅହଲ୍ୟା ପତିଙ୍କ ଶବ ସହିତ ସହମୃତା ହେବାକୁ ଉଦ୍ୟତ ହେଲାରୁ ଶ୍ୱଶୁରଙ୍କ ଅନୁରୋଧରେ ବହୁ କଷ୍ଟରେ ପ୍ରାଣ ଧାରଣ କରିଥିଲେ ।

ବୃଦ୍ଧ ରାଜା ମହ୍ଲାର ରାଓ ପୁତ୍ର ଶୋକରେ ଅଭିଭୂତ ହୋଇ ପୁତ୍ର ବଧୂ ଅହଲ୍ୟାଙ୍କ ଉପରେ ଶାସନର ଗୁରୁଭାର ନ୍ୟସ୍ତକଲେ । ତେଣୁ ଶୋକାକୁଳା ଅହଲ୍ୟା ସ୍ୱାମୀଙ୍କ ବିଚ୍ଛେଦ ଦୁଃଖକୁ ପଛକୁ ପକାଇ ପ୍ରଜାମାନଙ୍କ ସୁଖଦୁଃଖ ବୁଝି କାର୍ଯ୍ୟ କରିବା ପାଇଁ ନିଯୁକ୍ତ ରହିଲେ । ମହାରାଜ ବଧୂଙ୍କର ରାଜକାର୍ଯ୍ୟରେ ସୁନ୍ଦର ଦକ୍ଷତା ଦେଖିଲେ । ସେ ଯେ ଇନ୍ଦୋର ରାଜ୍ୟ ପରିଚାଳନା କରିପାରିବେ ତାହା ବୁଝି ଆନନ୍ଦିତ ହୋଇ ଅହଲ୍ୟାଙ୍କୁ ନିଜର ରାଜକ୍ଷମତା ଦେଇଥିଲେ । ଅହଲ୍ୟା ଇନ୍ଦୋରର ରାଣୀ ହେଲେ । ମହାରାଜା ୧୭୬୧ ପାନିପଥ ଯୁଦ୍ଧରେ ଯୋଗଦେଇ ଫେରି ଆସିଲେ । ସମସ୍ତ ପ୍ରଜାଙ୍କ ମୁଖରେ ବଧୂଙ୍କର କାର୍ଯ୍ୟକୁଶଳତା ଶୁଣି ତାଙ୍କର ମନରେ ଧାରଣା ହେଲା ଯେ ଅହଲ୍ୟାବାଈ ଏକମାତ୍ର ରାଜ୍ୟଶାସନ କରିବାର ଉପଯୁକ୍ତ ପାତ୍ରୀ ଅଟନ୍ତି ।

ଅହଲ୍ୟାଙ୍କ ପୁତ୍ର ମାଲେରାଓ ଅତ୍ୟନ୍ତ ଦୁଷ୍ଟ, ନିଷ୍ଠୁର ଓ ନିର୍ବୋଧ ପ୍ରକୃତିର ଯୁବକ ଥିଲେ । ମାତାଙ୍କର ସମସ୍ତ ବିପରୀତ ଗୁଣମାନ ତାଙ୍କ ଚରିତ୍ରରେ ଫୁଟି ଉଠିଥିଲା । ସେ ଦୀନ ଦୁଃଖି,

ବ୍ରାହ୍ମଣ ବୈଷ୍ଣବଙ୍କ ପ୍ରତି ନିର୍ଦ୍ଦୟ ଓ ପ୍ରଜାପୀଡ଼କ ଥିଲେ । ଲୋକେ ତାଙ୍କ ପ୍ରତି ଅତି ଅସନ୍ତୁଷ୍ଟ ଥିଲେ । ସେ ଗୋଟିଏ ଦୁଃଖୀ ଶିଳ୍ପକାରକୁ ବିନା ଦୋଷରେ ବିନା ବିଚାରରେ ହତ୍ୟା କରିବାରୁ ସେହି ଶିଳ୍ପୀର ମୃତ୍ୟୁ କାର୍ଯ୍ୟର ଅଭିଶାପରେ ସେ ପାଗଳ ହୋଇଗଲେ । ମାଆ ଯେତେ ବୁଝାଇଲେ, ଦେବଦେବୀ ମନାସିଲେ ସେଥିରେ ପୁତ୍ର ବଧିର ହୋଇ କୁକାର୍ଯ୍ୟମାନ କରି, ଶେଷରେ ଜଗତର ଅଭିଶାପ ନେଇ ମୃତ୍ୟୁ ମୁଖରେ ପଡ଼ିଲେ । ଏଥିରେ ରାଣୀଙ୍କର ଦୁଃଖରେ ମେରୁଦଣ୍ଡ ଭାଙ୍ଗିଗଲା । ସ୍ୱାମୀ ମୃତ—ପୁତ୍ର ମୃତ । ସେ କାହାକୁ ନେଇ ରାଜ୍ୟ ଚଳାଇବେ ? କାହିଁକି ବଞ୍ଚିବେ ? ଜୀବନ ତାଙ୍କର ବିଷାକ୍ତ ହୋଇପଡ଼ିଲା ।

ତାଙ୍କୁ ତାଙ୍କ ଶ୍ୱଶୁର ମହ୍ଲାର ରାଓ ଓ ଅନ୍ୟ ପରିଜନମାନେ ବୁଝାସୁଝା କରି ପ୍ରକୃତିସ୍ଥ କଲେ । ରାଣୀ ପୁଣି ରାଜକାର୍ଯ୍ୟ କଲେ । ଇନ୍ଦୋରବାସୀ ଧନଧାନ୍ୟ ଗୋପଲକ୍ଷ୍ମୀ ପାଇଲେ । ରାଜ ପରିବାରର ଲୋକେ ଅହଲ୍ୟାଙ୍କ ବିରୁଦ୍ଧରେ ଲାଗିଲେ । କିନ୍ତୁ ମହ୍ଲାର ରାଓ ଅହଲ୍ୟାଙ୍କୁ ନିଜର ରାଜଗାଦି ଦେବାରୁ ସମସ୍ତଙ୍କର ଷଡ଼ଯନ୍ତ୍ର ବିଫଳ ହୋଇଥିଲା । ତାଙ୍କର ଆତ୍ମୀୟମାନେ ଅହଲ୍ୟାଙ୍କୁ ରାଜକୋଷରୁ ଅର୍ଥ ପ୍ରାର୍ଥନା କରୁଥିଲେ ମଧ୍ୟ ସେ ସେମାନଙ୍କ ପ୍ରାର୍ଥନାରେ କର୍ଣ୍ଣପାତ କରୁ ନ ଥିଲେ । ସେ କହୁଥିଲେ, ପ୍ରଜାର ଧନ ଧର୍ମ କାର୍ଯ୍ୟରେ, ପ୍ରଜାମଙ୍ଗଳ କାର୍ଯ୍ୟରେ ବ୍ୟୟ କରିବାକୁ ରଖାଯାଇଛି । ରାଜ ପରିବାରର ଆତ୍ମୀୟ ବନ୍ଧୁବାନ୍ଧବଙ୍କୁ ଦାନ କରିବାକୁ ରଖା ହୋଇ ନାହିଁ । ଏହା ଶୁଣି ତାଙ୍କ ବିରୁଦ୍ଧରେ ରାଘୋବା ବୋଲି ଜଣେ ପ୍ରତିପତ୍ତିଶାଳୀ ରାଜପୁରୁଷ ଯୁଦ୍ଧ କରିବାକୁ ଆସିଲେ । ଅହଲ୍ୟାଙ୍କ ରକ୍ତରେ ଛତ୍ରପତି ଶିବାଜୀଙ୍କ ରକ୍ତ ରହିଥିଲା । ସେ

ମଧ୍ୟ ବୀରାଙ୍ଗନା ସାଜି ଅନ୍ୟ ରମଣୀମାନଙ୍କୁ ସୈନିକା କରି ଯୁଦ୍ଧ ଭୂମିରେ ଦଣ୍ଡାୟମାନ ହେଲେ । ଅସ୍ତ୍ରଧାରିଣୀ ଅହଲ୍ୟାଙ୍କର ଚଣ୍ଡୀମୂର୍ତ୍ତି ଦେଖି ବିପକ୍ଷ ସେନାଙ୍କୁ ନେଇ ଧନାର୍ଥୀ ରାଘୋବ ଯୁଦ୍ଧ ନ କରି ଚାଲିଗଲେ ।

ରାଣୀଙ୍କୁ ପାଖଆଖ ରାଜ୍ୟର ରାଜାମାନେ ବଡ଼ ଭକ୍ତି କରୁଥିଲେ । ସେ ସମସ୍ତଙ୍କୁ ନିଜର ନ୍ୟାୟପରାୟଣତା ଓ ବୁଦ୍ଧିମତ୍ତାରେ ମୁଗ୍ଧ କରିଥିଲେ । ଅହଲ୍ୟା ତାଙ୍କର ପ୍ରଶଂସା ଶୁଣିବାକୁ ଅତ୍ୟନ୍ତ ଘୃଣା କରୁଥିଲେ । ସେ କହୁଥିଲେ, ମୋର କର୍ତ୍ତବ୍ୟ ମୁଁ କରୁଛି । ମୋତେ ପ୍ରଶଂସା କରିବାର କାରଣ ନାହିଁ । ଗୋଟିଏ ଧନାର୍ଥୀ ବ୍ୟକ୍ତି ତାଙ୍କର ପ୍ରଶଂସା ଗୀତି ଲେଖି ଆଣି ତାଙ୍କୁ ଉପହାର ଦେଲା । ସେ ତାହା ପାଠ କରି ସେହି ବ୍ୟକ୍ତିଙ୍କୁ ଅର୍ଥ ନ ଦେଇ ତାଙ୍କ ନାମ ଲିଖିତ ରାଜ ପ୍ରଶସ୍ତି ଲେଖାକୁ ନେଇ ନର୍ମଦା ନଦୀରେ ଫିଙ୍ଗି ଦେଇଥିଲେ । ଏ ଯୁଗର ରାଜା ରାଣୀ ସେ ଯୁଗର ରାଜା ରାଣୀଙ୍କ ପ୍ରକୃତି ଓ ପ୍ରବୃତ୍ତିରେ ଆକାଶ ପାତାଳ ବିଭିନ୍ନତା ଦେଖାଯାଏ ।

ରାଣୀ ଅର୍ଥ ଲୋଭୀ ନ ଥିଲେ । ଜଣେ ଧନୀ ବ୍ୟକ୍ତି ନିଃସନ୍ତାନ ହୋଇ ମରିଗଲାରୁ ତାର ବିଧବା ପତ୍ନୀ ପୋଷ୍ୟପୁତ୍ର ଗ୍ରହଣ କରିବାକୁ ରାଣୀଙ୍କ ଅନୁମତି ମାଗିଲା । କର୍ମଚାରୀମାନେ ଏକଥା ଜାଣି ବିଧବାକୁ ତିନିଲକ୍ଷ ଟଙ୍କା ରାଜକୋଷକୁ ଦେବାକୁ କହିଲେ । ଅହଲ୍ୟା ଏ କଥା ଶୁଣି ବିରକ୍ତ ହୋଇ ଏହି ଅନ୍ୟାୟ ବିଚାରର ପ୍ରତିବିଧାନ କରି ବିଧବାକୁ ପୋଷ୍ୟପୁତ୍ର ଗ୍ରହଣ କରିବାକୁ ଅନୁମତି ଦେଇଥିଲେ । କର୍ମଚାରୀମାନଙ୍କର ଅସତ୍ ଚେଷ୍ଟା ବ୍ୟର୍ଥ ହୋଇଥିଲା ।

ସେ ଆମର "ଜଗନ୍ନାଥ ସଡ଼କ" କରିଥିଲେ । ଭାରତରେ ଏହି ସଡ଼କକୁ "Grand Trunk Road" କହନ୍ତି । ସେ ତାଙ୍କ

ଜୀବନରେ ବହୁତ ଦାନ ପୁଣ୍ୟ କରିଥିଲେ । କାଶୀର ବିଶ୍ୱେଶ୍ୱର ମନ୍ଦିର ଓ ଅହଲ୍ୟା ବାଈ ଘାଟ ତାଙ୍କର କୀର୍ତ୍ତି । ଠାବେ ଠାବେ ଅନ୍ନଛତ୍ର ଜଳଛତ୍ର ଦାନ କରି ସେ ଜଗତର ଦରିଦ୍ର ଜନତାଙ୍କର ନିତ୍ୟ ସେବାନିରତା ଥିଲେ । ସେ ନିଜେ ରାଜ ପ୍ରାସାଦରେ ଏବଂ ରାସ୍ତାରେ ଛିଡ଼ା ହୋଇ ଭିକ୍ଷା ଦେଉଥିଲେ । ଦକ୍ଷିଣାଞ୍ଚଳରେ ଗଙ୍ଗାଜଳ ଢାଳିଲେ ଦେବଦେବୀଙ୍କ ପୂଜା ହେବ ସେଥିପାଇଁ ସେ ଗଙ୍ଗାଜଳ ଯିବାର ବ୍ୟବସ୍ଥା କରିଥିଲେ । ସେ ବହୁତ ଦେବ ଦେବୀଙ୍କ ମନ୍ଦିର ନିର୍ମାଣ ଓ ପୂଜା ଖଞ୍ଜିଥିଲେ । ନର୍ମଦା ଜଳରେ ଖାଦ୍ୟ ପକାଇ ସେ ଜଳଜନ୍ତୁ ଓ ପଶୁପକ୍ଷୀଙ୍କୁ ଆଧାର ଦେବାର ବ୍ୟବସ୍ଥା କରିଥିଲେ । ସେ ନିଜେ ଅତି ସରଳ ବୈଧବ୍ୟ ଜୀବନ ଯାପନ କରୁଥିଲେ । ମହାରାଣୀ ନିତି ଦରିଦ୍ରଙ୍କୁ ଦାନ ନ କରି ଭୋଜନ କରୁ ନ ଥିଲେ । ସେ ପ୍ରତିଦିନ ରାଜ୍ୟ ପରିକ୍ରମା କରି ପ୍ରଜାଙ୍କ ସୁଖ ଦୁଃଖ ନିଜେ ଶୁଣି ତାର ପ୍ରତିକାର କରି ପ୍ରଜାର ଦୁଃଖ ମୋଚନ କରୁଥିଲେ । ସେ ଗାଁ ଗଣ୍ଡାରେ ଅନେକ ସମୟରେ ରହି ଦେବାରାଧନା ଓ ଦାନ ପୁଣ୍ୟ ବ୍ରତ, ଉପବାସ କରୁଥିଲେ । ବହୁ ଶ୍ରମ କରି, ବ୍ରତ ଉପବାସରେ ରହି ତାଙ୍କୁ -ରାଜକାର୍ଯ୍ୟ କରିବାକୁ ପଡ଼ୁଥିଲା । ସେ ନିଜର ସ୍ୱାସ୍ଥ୍ୟ କଥା ମନକୁ ଆଣୁ ନ ଥିଲେ ।

ସେହି କାଳରେ ଭାରତକୁ ଯେଉଁ ଇଂରେଜ ବଣିକମାନେ ଆସୁଥିଲେ ସେମାନେ ଅହଲ୍ୟାବାଈଙ୍କ ଉନ୍ମୁକ୍ତ ହୃଦୟ ଓ ରାଜ୍ୟ ଚାଳନ ଦକ୍ଷତା ସମ୍ବନ୍ଧରେ ବହୁତ ପ୍ରଶଂସା କରି ଲେଖି ଯାଇଛନ୍ତି । ସେ ମହାରାଷ୍ଟ୍ରରେ ଥାଇ ଆକୁମାରୀ ହିମାଳୟ ପର୍ଯ୍ୟନ୍ତ ଜନତାର ମଙ୍ଗଳ ପାଇଁ ବହୁତ କୀର୍ତ୍ତି କରିଯାଇଛନ୍ତି । ଏହି ନାରୀ ପୁଣ୍ୟଶ୍ଳୋକା ଅଟନ୍ତି । ଭାରତୀୟ ଧର୍ମ ଓ ସଂସ୍କୃତି ବନ୍ଦନୀୟ ନାରୀମାନଙ୍କର ଶୁଦ୍ଧାଚରଣର ଆଦର୍ଶ ସେ ନିଜର

ଜୀବନରେ ଦର୍ଶାଇ ଯାଇଛନ୍ତି । ନିଜର ସ୍ୱାସ୍ଥ୍ୟ ଭଗ୍ନ ଓ ଚିନ୍ତା ବଢ଼ିବାରୁ ୬୦ ବର୍ଷ ବୟସରେ ତାଙ୍କର ମୃତ୍ୟୁ ହେଲା । ସେ ପୋଷ୍ୟପୁତ୍ର ଗ୍ରହଣ କରିଥିଲେ । ସେହି ବଂଶ ଇନ୍ଦୋରରେ ବର୍ତ୍ତମାନ ରହିଛନ୍ତି । ସେ ଯେତେ ଧର୍ମକାର୍ଯ୍ୟ କରିଯାଇଛନ୍ତି ଭାରତରେ କେବଳ ପୃଥିବୀର ପ୍ରାଣୀମାନଙ୍କର ଜୀବନଇତିହାସ ଆଲୋଚନା କଲେ ତାହାର ଯଥାର୍ଥ ତୁଳନା ମିଳିବ ନାହିଁ ବୋଲି କହିଲେ ବାହୁଲ୍ୟ ହେବ ନାହିଁ ।

ଭାରତର ଏ ପୁଣ୍ୟଭୂମିରେ ବହୁ ପୁଣ୍ୟବତୀ ଧର୍ମଶୀଳା ତପସ୍ୱିନୀ ବୀରରମଣୀମାନଙ୍କର ପଦରଜ ପଡ଼ିଅଛି । ସେମାନଙ୍କର ଜୀବନାଦର୍ଶ ଆଲୋଚନା କଲେ ମନରେ ଭକ୍ତି ଓ ଶ୍ରଦ୍ଧାଭାବ ସେମାନଙ୍କ ସ୍ମୃତି ଉଦ୍ଦେଶ୍ୟରେ ଜାଗରୂକ ହୁଏ । ନାରୀ ଶକ୍ତିମୟୀ । ନାରୀ ଜୀବନରେ ଦୃଢ଼ତା ଓ ସଂକଳ୍ପାତ୍ମିକା ବୁଦ୍ଧି ଶୁଦ୍ଧଚରିତ୍ରବତ୍ତାର ସମାବେଶ ଥିଲେ ସେ ରାଜ୍ୟପରିଚାଳନା କରି ପ୍ରଜାରଞ୍ଜିକା ରାଣୀ ହୋଇ ପାରିବାର ଦୃଷ୍ଟାନ୍ତ ଭାରତବର୍ଷରେ ରହିଅଛି ।

ଆମର ନାରୀଜାତି ଆଜି ଦୁର୍ବଳା ହୋଇ ରହିଛନ୍ତି । ସଂସାର ପରିବର୍ତ୍ତନଶୀଳ । ତେଣୁ ସେମାନେ ଭବିଷ୍ୟତ୍ କାଳରେ ଭାରତୀୟ ଚରିତ୍ରବତୀ ନାରୀମାନଙ୍କର ବିଚାର, ବୁଦ୍ଧି, ବିବେଚନା, ନ୍ୟାୟପରାୟଣତା, ସତ୍ୟତା ଓ ଦୃଢ଼ମତି ଜ୍ଞାନର ଆଦର୍ଶ ଚିନ୍ତା କରିବା ଉଚିତ । ତେବେ ଯାଇ ଭାରତବର୍ଷରେ ପୁଣ୍ୟଶୀଳା ଧୈର୍ଯ୍ୟବତୀ, ଦାନଶୀଳା, କର୍ତ୍ତବ୍ୟ ପରାୟଣା, ନିରଂହକାରୀ ହୃଦୟବତୀ ରମଣୀମାନେ ଜନ୍ମ ହୋଇ ଧରା ପବିତ୍ର କରିବେ ।

—✱—

# ବୌଦ୍ଧଯୁଗରେ ବସ୍ତ୍ରବଣୀ

ପ୍ରାଚୀନ ଭାରତରେ ନାରୀମାନଙ୍କ ପ୍ରତି ଭାରତର ଯେପରି ଦୃଷ୍ଟିଭଙ୍ଗି ରହିଥିଲା, ବୌଦ୍ଧଯୁଗରେ ଗୌତମ ବୁଦ୍ଧଦେବଙ୍କର ମଧ୍ୟ ସେହିପରି ଥିଲା । ଋକ୍‌ବେଦ କାଳ ପରେ ନାରୀମାନଙ୍କର ପ୍ରତିଷ୍ଠା ପ୍ରଶ୍ନାତ୍ମକ ହୋଇଥିଲା । ତାହା ଉତ୍ତରୋତ୍ତର ଆହୁରି ମନ୍ଦ ଆଡ଼କୁ ଗତି କରିଥିଲା । ବୈଦିକକାଳ ପରେ ଉପନିଷଦ ଯୁଗ ଆସିଲା । ସେ ଯୁଗରେ ଆମେ ଗାର୍ଗୀ, ମୈତ୍ରେୟୀ, ବିଶ୍ୱବାରାଙ୍କ-ଭଳି ବ୍ରହ୍ମବାଦିନୀ ନାରୀମାନଙ୍କୁ ଦେଖୁଁ । କିନ୍ତୁ ସେହି କାଳରେ ମହର୍ଷି ଯାଜ୍ଞବଲ୍କ୍ୟଙ୍କ ଦୁଇ ପତ୍ନୀଙ୍କ ଭିତରୁ ଜଣେ ଅମୃତତ୍ତ୍ୱ ବା ବ୍ରହ୍ମବିଦ୍ୟାରେ ପାରଦର୍ଶିନୀ ଥିଲେ ମାତ୍ର ଅନ୍ୟ ଜଣେ ଅଶିକ୍ଷିତା ଥିଲେ । ଦୁଇ ପତ୍ନୀ ଋଷିଙ୍କର ରହିବା ନାରୀର ଗୌରବପ୍ରଦ ବା ପତ୍ନୀର ସମ୍ମାନକର ନ ଥିଲା । ସେହି ଉପନିଷଦ କାଳରେ ମହାପ୍ରାଣ ବୁଦ୍ଧଙ୍କର ଆବିର୍ଭାବ ହୋଇଥିଲା । ସେହି ଯୁଗରେ ବୁଦ୍ଧଙ୍କର ଦୃଷ୍ଟିକୋଣରେ ନାରୀ ପ୍ରତି ଉଦାସ ବିରୋଧ ଭାବ ମଧ୍ୟ ରହିଥିଲା ।

ବୌଦ୍ଧଯୁଗର ଇତିହାସ ଅବଲୋକନ କଲେ । ଗାର୍ଗୀ ମୈତ୍ରେୟୀଙ୍କ ପରି କୌଣସି ପ୍ରତିଷ୍ଠିତା ନାରୀ ସେହି ଯୁଗର

ବୁଦ୍ଧ ପ୍ରତିଷ୍ଠିତ ସଙ୍ଘରେ ନ ଥିଲେ । ବିଶାଖା ତାଙ୍କର ନିକଟତମ କାୟା ବା ଭୌତିକ ଛାୟା ମାତ୍ର ଥିଲେ । ତାଙ୍କର ପ୍ରଜ୍ଞା ବା ବୁଦ୍ଧି ସହିତ ସଂପର୍କ ନ ଥିଲା । ତାଙ୍କର ହୃଦୟ ଉଦାର ଥିଲା । ସଂଘ ପ୍ରତି ଓ ବୁଦ୍ଧଙ୍କ ପ୍ରତି ତାଙ୍କର ବଡ଼ୁର ଉଦାର ଓ ଅନୁକୂଳ ଥିଲା ।

ବୁଦ୍ଧଙ୍କ ସଂପର୍କରେ ଯେଉଁ ନାରୀମାନେ ସେ ଯୁଗରେ ଆସିଥିଲେ, ସେମାନଙ୍କ ମଧ୍ୟରୁ ବହୁତ ବୁଦ୍ଧଙ୍କ ଉପଦେଶ ପାଇ ସଂସାର ତ୍ୟାଗ କରି ନିର୍ବାଣ ପାଇଥିଲେ ବୋଲି 'ଥେରୀଗାଥା'ରେ ଲିଖିତ ଅଛି । ସେମାନଙ୍କୁ 'ଥେରୀ' କୁହାଯାଉଥିଲା । ଏହି ନାରୀମାନଙ୍କ ଭିତରେ ମାୟା, ସୁଜାତା, ପ୍ରଜାବତୀ, ଯଶୋଧାରା ଓ ବିଶାଖା, ପ୍ରଧାନ ଥିଲେ । ମାୟା ବା ମହାମାୟା ବୁଦ୍ଧଙ୍କ ଜନନୀ ଓ ଦେବଦହ ରାଜ୍ୟର କନ୍ୟା ଥିଲେ । ଶାକ୍ୟ ରାଜବଂଶ ରାଜ୍ୟ ଭିତରେ ଦେବଦହ ଗୋଟିଏ ପାର୍ବତ୍ୟ ଜନପଦ ଥିଲା । ସେହି ସ୍ଥାନର ଅଭିଜାତ ବଂଶମାନଙ୍କ ଘରେ ଶାକ୍ୟ ରାଜବଂଶର ତରୁଣମାନେ ବିବାହ କରୁଥିଲେ । ବୁଦ୍ଧଙ୍କ ପିତା ରାଜା ଶୁଦ୍ଧୋଦନଙ୍କର ଦୁଇ ପତ୍ନୀ ପ୍ରଜାବତୀ ଓ ମାୟା ଦେବଦହରୁ ଆସିଥିଲେ । ସେହି ଦେବଦହର କନ୍ୟା ଯଶୋଧାରା ବୁଦ୍ଧଙ୍କ ପତ୍ନୀ ଥିଲେ । ତାଙ୍କର ନାମ ଗୋପା ଥିଲା । ସେହି କାଳରେ ମାମୁଁର ଝିଅକୁ ବିବାହ କରିବା କ୍ଷତ୍ରିୟ ସମାଜର ରୀତି ଥିଲା । ତାହା ବୈଦିକ ପରଂପରାର ଅନୁକୂଳ ବୋଲି ଧରା ଯାଉଥିଲା । ଶୁଦ୍ଧୋଦନଙ୍କ ପତ୍ନୀର ସାନଭଉଣୀ ମହାପ୍ରଜାବତୀଙ୍କୁ ବିବାହ କରିଥିଲେ । ବୁଦ୍ଧଦେବ ମାଉସୀ ଥିଲେ ପ୍ରଜାବତୀ । ପ୍ରଜାବତୀ ପ୍ରଥମ ବୁଦ୍ଧନାରୀ ଯାହାଙ୍କ ପ୍ରଥମ ଦୀକ୍ଷାଦରେ ସେ ଯୁଗରେ

ବୌଦ୍ଧଭିକ୍ଷୁଣୀମାନେ ଶିକ୍ଷିତା ହୋଇ ବୌଦ୍ଧସଂଘରେ ପ୍ରବେଶା-ଧିକାର ପାଇଥିଲେ । ତାହାଙ୍କ ପୂର୍ବରୁ ବୌଦ୍ଧସଂଘରେ ନାରୀ ବର୍ଜନୀୟା ଥିଲ । ପ୍ରଜାବତୀଙ୍କର ଧର୍ମ ପିପାସାରେ ବୌଦ୍ଧଧର୍ମ ସଂଘରେ ଏକ ପ୍ରବଳ ବିପ୍ଳବ ସେ ପ୍ରଥମେ ସୃଷ୍ଟି କଲେ । ପ୍ରଜାବତୀ ପ୍ରଥମ ବୌଦ୍ଧଭିକ୍ଷୁଣୀ ଥିଲେ । ବୁଦ୍ଧଦେବ ଓ ବୌଦ୍ଧସଂଘଙ୍କ ପ୍ରବଳ ବିରୋଧ ସତ୍ତ୍ୱେ ଏହି ନାରୀ ନିଜର ପ୍ରବଳ ଆତ୍ମଶକ୍ତି ଓ ବ୍ୟକ୍ତିତ୍ୱ ତଥା ନିଜର ଧର୍ମପିପାସା ଚରିତାର୍ଥ କରିବାକୁ ଯାଇ ସମଗ୍ର ସଂଘର ବିରୋଧିତା ସତ୍ତ୍ୱେ ପ୍ରବର୍ଯ୍ୟା ଗ୍ରହଣ କରିଥିଲେ । ଏହା ସେ କାଳରେ କମ ସାହସିକତାର କଥା ନୁହେଁ । ଯେତେବେଳେ ତଥାଗତ ବୁଦ୍ଧ କପିଳବାସ୍ତୁ ନଗରୀକୁ ଆସିଥିଲେ ସେତେବେଳେ ଶାକ୍ୟବଂଶର ଅଭିଜାତ ନାରୀମାନେ ତାଙ୍କ ଧର୍ମ ସଂଘରେ ପଶିବା-ପାଇଁ ପ୍ରବଳ ଅନ୍ଦୋଳନ କରିଥିଲେ । କିନ୍ତୁ ବୁଦ୍ଧଦେବ ତହିଁରେ ଘୋର ବିରୋଧ କରି ଅନ୍ୟ କେଉଁ ନାରୀମାନଙ୍କୁ ପ୍ରବେଶାଧିକାର ଦେଇ ନ ଥିଲେ ।

ଅର୍ଥବ ବେଦରେ କନ୍ୟା ଜନ୍ମକୁ କ୍ଲେଶକର କୁହାଯାଉଛି । ବ୍ରାହ୍ମଣ ସେ କନ୍ୟାଜନ୍ମକୁ ଅତି ଦୁଃଖଦାୟକ ଓ ଚିନ୍ତାଦାୟକ କହୁଥିଲେ । କାଶ୍ମୀର ପଣ୍ଡିତ ଦାମୋଦର ଗୁପ୍ତ ତାଙ୍କର "କୁଟ୍ଟନୀମତମ୍ "ଗ୍ରନ୍ଥରେ" ଲେଖିଛନ୍ତି, "ଯେଉଁ ପିତାମାନେ କନ୍ୟାରତ୍ନରେ ଧନୀ ସେମାନେ ମୁଣ୍ଡରେ ସର୍ପପେଟିକା ବହନ କରିଥାନ୍ତି ।" ନାରୀମାନଙ୍କ ପ୍ରତି ଏହି ଭାବନା ଆମ ଦେଶରେ ଖ୍ରୀଷ୍ଟପୂର୍ବ ଦ୍ୱାଦଶ ଶତାବ୍ଦୀରୁ ଖ୍ରୀଷ୍ଟପର ଦ୍ୱାଦଶ ଶତାବ୍ଦୀ ପର୍ଯ୍ୟନ୍ତ ରହିଥିଲା । ବୁଦ୍ଧଦେବ ତାଙ୍କର ଅଶୀତିପର ବୃଦ୍ଧା ମାତୃ ସ୍ୱାସ ପ୍ରଜାବତୀଙ୍କୁ ବୌଦ୍ଧସଂଘ ପ୍ରବେଶରେ ବାଧା ଓ ବିରୋଧ କରିବା ସେହି ଭାବନାର ପରମ୍ପରା ବୋଲି ଧରାଯିବ ।

କିନ୍ତୁ ପ୍ରଜାବତୀ ଅତି ଅସାଧାରଣ ନାରୀ ଥିଲେ । ସେଥିପାଇଁ ସ୍ୱୟଂ ବୁଦ୍ଧ ଓ ତାଙ୍କର ସଙ୍ଘଙ୍କ ପ୍ରବଳ ବାଧା ଓ ବିରୋଧ ସତ୍ତ୍ୱେ ସେ ସେମାନଙ୍କର ବାଧା ଅତିକ୍ରମ କରି ସଙ୍ଘ ପ୍ରବେଶ କରି ପାରିଥିଲେ । କପିଳବାସ୍ତୁ ନଗର ଓ ନଦୀ ନାଳ ଅତିକ୍ରମ କରି ଏହି ମହାପ୍ରଜ୍ଞୀ ନାରୀ ଦିନେ ଏକାକିନୀ ଯାଇ ଶ୍ରାବସ୍ତୀ ନଗରର ଜେତବନ ବିହାରର ସିଂହଦ୍ୱାର ନିକଟରେ ପହଞ୍ଚିଥିଲେ । ବୁଦ୍ଧଦେବ ତାଙ୍କ ସହିତ ଦେଖା କରିବାକୁ ଅସ୍ୱୀକାର କରିଥିଲେ । ମାତ୍ର ତାଙ୍କର ପ୍ରଧାନ ଶିଷ୍ୟ ଆନନ୍ଦଙ୍କ ପ୍ରବଳ ପ୍ରଭାବ ଓ ପ୍ରରୋଚନାରେ ସେ ବୃଦ୍ଧା ମାତୃଷ୍ୱସାଙ୍କ ପ୍ରତି ସୌଜନ୍ୟ ପ୍ରକାଶ କରିବାକୁ ବାଧ୍ୟ ହୋଇଥିଲେ । ତଥାଗତ ବୁଦ୍ଧ ବାଧ୍ୟ ହୋଇ କେବଳ ପ୍ରଜାବତୀଙ୍କୁ ଦର୍ଶନ ଦେଇଥିଲେ ଏବଂ ତାଙ୍କୁ ପ୍ରବ୍ରଜ୍ୟା ଦେଇ ଭିକ୍ଷୁଣୀ ବୋଲି ସ୍ୱୀକାର କରିଥିଲେ ।

ବୁଦ୍ଧଦେବ କିନ୍ତୁ ଏହି କାର୍ଯ୍ୟରେ ଅତ୍ୟନ୍ତ ମାନସିକ କ୍ଲେଶ ଓ ଅନୁତାପ ବୋଧ କରିଥିଲେ । କାରଣ ଯାହା ତାଙ୍କର ଧର୍ମ ସିଦ୍ଧାନ୍ତର ପରମ ବିରୋଧି ଥିଲା, ଶିଷ୍ୟ ଆନନ୍ଦଙ୍କ ଅନୁନୟ ଦ୍ୱାରା ତାହା ପ୍ରତିହତ ହୋଇଥିଲା । ସେଥିପାଇଁ ଶେଷରେ ନାରୀମାନଙ୍କୁ ସେ ବାଧ୍ୟହୋଇ ପ୍ରବ୍ରଜ୍ୟା ନେବା ଓ ଭିକ୍ଷୁଣୀ ହେବାର ଅଧିକାରକୁ ସ୍ୱୀକାର କରିଥିଲେ ।

ଯଶୋଧାରା ବା ଗୋପା ବୁଦ୍ଧ-ପତ୍ନୀ ମଧ୍ୟ ମାୟାଙ୍କ ଭଳି ଦେବଦହର କନ୍ୟା ଥିଲେ ଓ ଗୌତମ ବୁଦ୍ଧଙ୍କ ମାମୁଁଙ୍କ ଝିଅ ଥିଲେ । ବୁଦ୍ଧ ମାମୁଁ-ଝିଅ ଭଉଣୀକୁ କୁଳାଚାର ଅନୁସାରେ ବିବାହ କରିଥିଲେ । ବୁଦ୍ଧଚରିତରେ ଯଶୋଧାରାଙ୍କ ଆଦର ନାମ 'ଗୋପା' ଲେଖାନାହିଁ । ସେ ବୁଦ୍ଧ ପୁତ୍ର ରାହୁଲଙ୍କ ମାତା ଓ 'ରାହୁଲମାତା'

ବୋଲି ତାଙ୍କର ପରିଚିତି ରହିଅଛି । ବୁଦ୍ଧଙ୍କ ପ୍ରାରମ୍ଭିକ ଜୀବନ ଏହି ଗୁଣବତୀ ସୁନ୍ଦରୀ ନାରୀରତ୍ନଙ୍କ ସହିତ ସମ୍ବନ୍ଧିତ ଥିଲା । ତାଙ୍କର ଉଦାସ ମନକୁ ପ୍ରସନ୍ନ ଓ ସାଂସାରିକ କରିବାପାଇଁ ଏହି ନାରୀଙ୍କୁ ଶାକ୍ୟବଂଶକୁ ଅଣାଯାଇଥିଲା । ବୁଦ୍ଧଙ୍କ ପିତା ତାଙ୍କର ଲକ୍ଷ୍ୟଚ୍ୟୁତି ପାଇଁ ଓ ଦୁଃଖମୟ ଉଦାସଭାବ ଭଗ୍ନ କରିବା ନିମନ୍ତେ ଏହି ସୁନ୍ଦରୀ ମହୀୟସୀ ନାରୀଙ୍କୁ ପୁତ୍ରବଧୂ କରିଥିଲେ । ବୁଦ୍ଧ ବାର ବର୍ଷ କାଳ ଏହି ନାରୀଙ୍କ ସହିତ ସଂସାର କରିଥିଲେ ଓ ପରେ ରାହୁଲଙ୍କ ଜନ୍ମ ହୋଇଥିଲା । ୧୬ ବର୍ଷରେ ବୁଦ୍ଧଦେବଙ୍କ ବିବାହ ହୋଇଥିଲା । ବୌଦ୍ଧଗ୍ରନ୍ଥରେ ବୁଦ୍ଧଙ୍କ ଦାମ୍ପତ୍ୟ କଥା ଓ ଏହି ନାରୀଙ୍କ ସମ୍ବନ୍ଧରେ ବହୁ ବିଷୟ ଲେଖାଅଛି । ତନ୍ମଧ୍ୟରେ ପ୍ରଧାନ କଥା ଲେଖାଅଛି—ଯେତେବେଳେ ଗୋପା ରାହୁଲର ମଥାଉପରେ ହାତରଖି ଶୋଇଥିଲେ, ଦାସୀମାନେ ଅଭଦ୍ର ମୁଦ୍ରାରେ ବସ୍ତ୍ର ବିକ୍ଷିପ୍ତ ଭାବରେ ନିଦ୍ରା ଯାଉଥିଲେ, ସେହି ସମୟରେ ବୁଦ୍ଧ ଛନ୍ଦକ ଓ କନ୍ୟକଙ୍କ ସାହାଯ୍ୟରେ ରାଜପ୍ରାସାଦ ଛାଡ଼ି ମହାନିଷ୍କ୍ରମଣ କରିଥିଲେ । ଯଶୋଧାରା ଦିନରାତି ସ୍ୱାମୀ ବିରହରେ କରୁଣ ବିଳାପ କଲେ । କିନ୍ତୁ ବୁଦ୍ଧ ଆଉ ଫେରିଲେ ନାହିଁ । ଚିରଦିନ ଯଶୋଧାରା କାନ୍ଦି କାନ୍ଦି କାଳ କାଟିଲେ ।

ତଥାଗତ ଗୌତମ "ବୁଦ୍ଧ" ହେଲାପରେ ପିତାଙ୍କ ଗୃହକୁ ଫେରିଥିଲେ । ତାଙ୍କର ପିତା ଶୁଦ୍ଧୋଦନ ନିଜ ପୁତ୍ରକୁ ନୂଆ ଗୌରବରେ ପ୍ରଣାମ କରିଥିଲେ । ନିଷ୍ଠାବତୀ ଗୋପା ପ୍ରାସାଦର ସିଂହଦ୍ୱାର ଅତିକ୍ରମ କରି ସ୍ୱାମୀଦର୍ଶନ କରିବାକୁ ଗଲେ ନାହିଁ । ସେ "ଆର୍ଯ୍ୟପୁତ୍ର" ସ୍ୱାମୀଙ୍କ ପ୍ରତୀକ୍ଷା କଲେ ରାଜପ୍ରାସାଦ ଭିତରେ ରହି । ସେ କଷାୟଧାରୀ ବୁଦ୍ଧଙ୍କୁ ନୂଆ ବେଶରେ

ଦେଖିବେ, ସ୍ୱାମୀଙ୍କର ନୂଆ ସନ୍ନ୍ୟାସ ରୂପ କଳ୍ପନା କରି ନଥିଲେ । ତେଣୁ ସେ ରାଜପ୍ରାସାଦରେ ତାଙ୍କୁ ପ୍ରତୀକ୍ଷା କଲେ । ମାତ୍ର ମୌଦ୍‌ଗଲ୍ୟାୟନ ଶାରିପୁତ୍ରଙ୍କ ସହିତରେ ତଥାଗତ ବୁଦ୍ଧ ସନ୍ନ୍ୟାସ ବେଶରେ ଭିକ୍ଷାପାତ୍ର ଧରି ନଗରର ଅନ୍ୟମାନଙ୍କ ଘରକୁ ଭିକ୍ଷାପାତ୍ର ନେଇଗଲା ରାସ୍ତାରେ ରାଜପ୍ରାସାଦକୁ ଆସିଥିଲେ । ରାଜପ୍ରାସାଦର ବାହାରେ ସେମାନେ ରହି ଗୋପାଙ୍କୁ ଭିକ୍ଷାପାତ୍ର ବଢ଼ାଇଦେଲେ । ଗୋପା ରାହୁଲଙ୍କୁ ଧରି ଦ୍ୱାର ମୁହଁରେ ଛିଡ଼ାହୋଇ ବୁଦ୍ଧଙ୍କୁ ଦେଖିଲେ । ଯେତେବେଳେ ବୁଦ୍ଧଦେବଙ୍କ ଭିକ୍ଷାପାତ୍ର ଗୋପାଙ୍କ ହାତ ସ୍ପର୍ଶ କଲା, ସେ ପୁଲକ ଗଦ୍‌ଗଦ କଣ୍ଠରେ କହିଲେ, "ନାଥ ! ଭିଖାରୀ ବେଶରେ ତ ଆସିଲ ! ଭିକ୍ଷା ନେବାକୁ କେବଳ ଆସିଲ ? ଯେଉଁ ଭିକ୍ଷା ମାଗିଲ, ମୋର ସବୁଠାରୁ ପ୍ରିୟ ବସ୍ତୁ ବୋଲି ଯାହାକୁ ମୁଁ ସ୍ୱୀକାର କରେ, ଯେ ମୋର ଅଶାନ୍ତ ଜୀବନରେ ପ୍ରାଣାଧାର ହୋଇଛି—ତାହାକୁହିଁ ନିଅ—ଏହି ତୁମର ପୁତ୍ର ରାହୁଲକୁ ।" ଯଶୋଧାରା ରାହୁଲକୁ କୋଳରୁ ଉଠାଇ ବୁଦ୍ଧଙ୍କୁ ଦେଲେ । ଏହାର ଚିତ୍ର ଅଜନ୍ତା ଭିତ୍ତିରେ ଅଙ୍କିତ ରହିଛି ।

ଯଶୋଧାରା ଏପରି ଦେବଦୁର୍ଲ୍ଲଭ ଦାନ ସ୍ୱାମୀ ଗୌତମ ବୁଦ୍ଧଙ୍କୁ ଦେଇ ନାରୀ ସୁଲଭ ବାକ୍ୟ କହିବାକୁ ଭୁଲି ନଥିଲେ । ସ୍ନେହ କଣ୍ଠରେ ରାହୁଲକୁ କହିଲେ, "ପୁତ୍ର ! ପିତାଙ୍କୁ ତୋର କଚ୍ଛା ଅଭିଳଷିତ ପଦାର୍ଥ ପାଇଁ ନିବେଦନ କର ।" ଏକଥା ଶୁଣି ବୁଦ୍ଧଦେବ ଟିକେ ମାତ୍ର ଅପ୍ରସ୍ତୁତ ହେଲେ ନାହିଁ । ସେ ଶାରିପୁତ୍ରଙ୍କୁ କହିଲେ, "ରାହୁଲକୁ ପ୍ରବର୍ଜ୍ୟା ଦିଅ ।" ଭିକ୍ଷୁକଙ୍କ ପାଖରେ ଆଉ କି ଧନ-ଦୌଲତ ଥିଲା ଯେ ଦେବେ ? କେବଳ ପ୍ରବର୍ଜ୍ୟା ଥିଲା, ତାହାହିଁ ପୁତ୍ରକୁ ଦେଇଥିଲେ । କିନ୍ତୁ ଯଶୋଧାରାଙ୍କ ବ୍ୟଙ୍ଗବାକ୍ୟ

ନିଷ୍କୃତି ହେଲନାହିଁ । ପରବର୍ତ୍ତୀ କାଳରେ ବୌଦ୍ଧସଂଘର କ୍ରମବିକାଶ ଧାରାରେ ଏହାର ବିଶେଷ ପ୍ରଭାବ ପଡ଼ିଥିଲା । ବୁଦ୍ଧଦେବ ନିଜେ ନିୟମ କରିଥିଲେ ଯେ ପିତାମାତାଙ୍କ ଆଦେଶ ବିନା କୌଣସି ନାବାଳକ ପିଲାକୁ ସଂଘଭୁକ୍ତ କରାହୋଇ ପ୍ରବ୍ରଜ୍ୟା ଦିଆଯିବ ନାହିଁ । ଶେଷରେ ବୌଦ୍ଧଗ୍ରନ୍ଥରୁ ପ୍ରମାଣିତ ହୁଏ ଯେ ଯଶୋଧାରା ବି ପ୍ରବ୍ରଜ୍ୟା ଗ୍ରହଣ କରି ସଂଘରେ ଭିକ୍ଷୁଣୀ ହୋଇ ରହିଥିଲେ । ଶେଷରେ ସେ ସଂସାର ତ୍ୟାଗ କରିଥିଲେ । ତାଙ୍କର ବିଳାସ ବୈଭବ, ରାଜପତ୍ନୀ,—ରାଜବଧୂ ଜୀବନରେ ଏକ ଧର୍ମବିପ୍ଳବ ଆସି ତାଙ୍କୁ ସଂସାରର ଦୁଃଖମୟ ନିତ୍ୟ ପରିବର୍ତ୍ତନଶୀଳ ଜୀବନ ଓ ସଂସାରର ଅନିତ୍ୟତା ସମ୍ବନ୍ଧେ ସଚେତନ କରିଦେଇଥିଲା । ଧର୍ମର ଚୁମ୍ବକ ସ୍ପର୍ଶରେ ସେ ବୈରାଗିଣୀ ହୋଇଗଲେ, ରାଜଗୃହ ଛାଡ଼ିଲେ ।

ସୁଜାତା ଏକ ବୌଦ୍ଧଧର୍ମୀ ସଂଘର ବିଖ୍ୟାତ ନାରୀ ଥିଲେ । ତଥାଗତ ବୁଦ୍ଧଙ୍କର ବୁଦ୍ଧତ୍ୱ ପ୍ରାପ୍ତି ସହିତରେ ତାଙ୍କର ସମ୍ବନ୍ଧ ରହିଥିଲା । ବୁଦ୍ଧଗୟା ନିକଟସ୍ଥ ଉରୁବେଲା ଗ୍ରାମ ନିକଟରେ ନିରଞ୍ଜନା ନଦୀ (ଫଲ୍‌ଗୁ ନଦୀ) ତୀରରେ ଯେତେବେଳେ ବୁଦ୍ଧ ସାତ ବର୍ଷ କଠିନ ତପସ୍ୟା କରି ଜୀର୍ଣ୍ଣଶୀର୍ଣ୍ଣ କଳେବର ହୋଇଥିଲେ, ଅସ୍ଥିପଞ୍ଜର ଦିଶିଗଲା, ପ୍ରାଣବାୟୁ ମାତ୍ର ଧାରଣ କରି ରହିଥିଲେ, ମସ୍ତିଷ୍କ ନିଷ୍କ୍ରିୟ ହୋଇଗଲା, ସେତେବେଳେ ସେ ଭାବିଲେ—ତପସ୍ୟା ତ୍ୟାଗ କରି ଶରୀରଧର୍ମ ପାଳନ ନକଲେ ସଂସାରର ଦୁଃଖନାଶ କରିବା ପାଇଁ ସେ କାର୍ଯ୍ୟକରି ପାରିବେ ନାହିଁ । ସେ ଭୋଜନ କରିବାକୁ ଇଚ୍ଛାକରି ନିରଞ୍ଜନା ନଦୀରେ ସ୍ନାନାନ୍ତେ ବୃକ୍ଷତଳେ ଯାଇବସିଲେ । ଶ୍ରେଷ୍ଠୀକନ୍ୟା ସୁଜାତା ବୃକ୍ଷଦେବତାଙ୍କୁ ପୂଜିବେ ବୋଲି ପାୟସ ନେଇ ଆସିଲେ । ବୁଦ୍ଧଦେବଙ୍କ ତପଃଜୀର୍ଣ୍ଣ-ଶୀର୍ଣ୍ଣ ଶରୀରକୁ ଦେଖି ସେ ମନେକଲେ ସେହି ବୃକ୍ଷର ସେ ଛଦ୍ମବେଶୀ

ଦେବତା । ତେଣୁ ସେ ପାୟସ ନେଇ ବୁଦ୍ଧଦେବଙ୍କ ସମ୍ମୁଖରେ ରଖିଦେଲେ । ଗୌତମ ପରମ ସନ୍ତୁଷ୍ଟ ଚିତ୍ତରେ ପାୟସ ଭୋଜନ କରିସାରି ସିଦ୍ଧିଲାଭ ପାଇଁ ପ୍ରସିଦ୍ଧ ବୋଧିବୃକ୍ଷ ତଳେ ଯାଇବସିଲେ ।

ନାରୀମାନଙ୍କ ସମ୍ବନ୍ଧରେ ଆଉ ଏକ ଘଟଣା ଘଟିଥିଲା । ବୁଦ୍ଧଙ୍କ ସିଦ୍ଧିରେ ନାରୀମାନଙ୍କର ସମ୍ପର୍କ ଥିଲା । ମାତ୍ର ସେ ସମ୍ବନ୍ଧ ବାଣୀ ଓ ନେତ୍ର ସମ୍ବନ୍ଧରେ ନଥିଲା, କିନ୍ତୁ ଶ୍ରବଣର ସମ୍ପର୍କ ଥିଲା । ଯେତେବେଳେ ଗୌତମ ସଂସାରର ଦୁଃଖ ତାପକଷ୍ଟ ନାଶ କରିବା ନିମନ୍ତେ ବୋଧିବୃକ୍ଷ ତଳେ ଧ୍ୟାନସ୍ଥ ରହିଥିଲେ, ଉକ୍ତବେଳା ଗ୍ରାମର ନର୍ତ୍ତକୀଗଣ ସେଠାରେ ନୃତ୍ୟ ଗୀତ ଗାଇ ଉପସ୍ଥିତା ହେଲେ ଗୀତର ମର୍ମକଥା ଥିଲା—ବୀଣାତାରକୁ ଢିଲା କରିଦେଲେ ବର୍ତ୍ତମସ୍ପୀ ବୀଣାର ସ୍ୱର ବାଜିବ ନାହିଁ । ବର୍ତ୍ତମସ୍ପୀ ବୀଣାର ତାର ବେଶି କଷିଲେ ବି ତାହା ବାଜିବ ନାହିଁ । ଏକ ଗୀତ ଶୁଣି ଗୌତମବୁଦ୍ଧ ତାଙ୍କର ଲକ୍ଷ୍ୟ ଲାଭକଲେ । ସେହି ସଙ୍ଗୀତରେ ସେ ନିଜର ଲବ୍‌ଧ ସତ୍ୟକୁ ଦର୍ଶନ କଲେ । ଅତି ତପସ୍ୟା ବା ଅତି ବିଳାସ ଧର୍ମର ପଥ ନୁହେଁ ବୋଲି ମନେ କରି ସେ ଏକ ମଧ୍ୟମ ମାର୍ଗ ( ମଜ୍‌ଝିମ ପ୍ରତିପଦା ) ଉଦ୍ଧାର କଲେ । ସେହି ମଧ୍ୟମ ପନ୍ଥାରେ ମାନବଜାତି ଜୀବନର ଆଦର୍ଶମାର୍ଗ ବୋଲି ସିଦ୍ଧାନ୍ତ କଲେ । ସେହି ସିଦ୍ଧାନ୍ତ ଭିତ୍ତି ଉପରେ ସେ ମାନବ କର୍ତ୍ତବ୍ୟର ଭିତ୍ତି ପକାଇଲେ ।

ବିଶାଖା ବୌଦ୍ଧଯୁଗରେ ପ୍ରସିଦ୍ଧ ଧର୍ମ ବିପ୍ଳବିଣୀ ନାରୀ ଥିଲେ । ତାଙ୍କର ନାମ ବୌଦ୍ଧ ଇତିହାସରେ ଅମର ଅକ୍ଷରରେ ଲିଖିତ ଅଛି । ତାଙ୍କର ଆସ୍ଥାନିଷ୍ଠା ଓ ଚେଷ୍ଟା, ଅଧ୍ୟବସାୟ, ଏକାଗ୍ରତା, ଧର୍ମ ପ୍ରବୃତ୍ତିରେ ବ୍ୟାପୃତ ରହିଥିଲା । ସେ ଶ୍ରାବସ୍ତୀ ନଗରରେ ଜଣେ ଗୃହସ୍ଥନାରୀ ଉପାସିକା ଥିଲେ ।

ବୁଦ୍ଧ ଓ ବୌଦ୍ଧସଂଘଙ୍କ ନିକଟରେ ସେ ଅତ୍ୟନ୍ତ ଆଦର ଓ ସମ୍ମାନ ଲାଭ କରିଥିଲେ । ସେ ଐଶ୍ୱର୍ଯ୍ୟଶାଳିନୀ ପୁତ୍ର-ପୌତ୍ରବତୀ ଜଣେ ଶ୍ରେଷ୍ଠୀନାରୀ ଥିଲେ । ବୌଦ୍ଧଗ୍ରନ୍ଥରେ ତାଙ୍କୁ "ମହାଉପାସିକା" ନାମିତ କରାଯାଇଛି । ସେ ବୁଦ୍ଧଦେବଙ୍କଠାରୁ ତାଙ୍କର କେତେ ଗୋଟି ପ୍ରସ୍ତାବ ପାଇଁ ଅନୁମତି ମାଗିଥିଲେ । ସମ୍ୟକ୍ ପ୍ରଥମେ ଏଥିରେ ବିରୋଧିତା କଲେ ମଧ୍ୟ ଶେଷରେ ତାଙ୍କ ପ୍ରସ୍ତାବରେ ବୁଦ୍ଧ ସ୍ୱୀକୃତି ଦେଇଥିଲେ । ତାଙ୍କ ପ୍ରାର୍ଥନାକୁ ସଂଘର ବିରୋଧ କରିବା କାରଣ ମଧ୍ୟରେ ଥିଲା ଯେ ସେ ସଂଘର ଭିକ୍ଷୁ ଓ ଭିକ୍ଷୁଣୀମାନଙ୍କ ଚରିତ୍ର ଅନୁକୂଳ କଥା କହି ନଥିଲେ । "ମହାବଗ୍ଗ" ଗ୍ରନ୍ଥରେ ତାଙ୍କ ସମ୍ବନ୍ଧରେ ଲେଖାଅଛି ଯେ ବିଶାଖା ଭଗବାନ ବୁଦ୍ଧଙ୍କ ଆଦେଶରେ ନଅଟି ବିଷୟ ମାଗିଥିଲେ । (୧) ବର୍ଷା କାଳରେ ବସ୍ତ୍ରଦାନ କରିବାକୁ, (୨) ନଗରରେ ହଠାତ୍ ପହଞ୍ଚିବା ଭିକ୍ଷୁମାନଙ୍କୁ ଭୋଜନଦାନ କରିବାକୁ, (୩) ନଗରରେ ପଶି ଯେଉଁ ଭିକ୍ଷୁମାନେ ବାହାରକୁ ଯିବେ ସେମାନଙ୍କ ପାଇଁ ଭୋଜନ ଦାନ, (୪) ରୋଗୀ ଭିକ୍ଷୁମାନଙ୍କୁ ଔଷଧ ଦାନ, (୫) ରୋଗୀଭିକ୍ଷୁମାନଙ୍କ ସେବା ଶୁଶ୍ରୂଷାକାରୀମାନଙ୍କୁ ଭୋଜନ ଦାନ, (୬) ଭିକ୍ଷୁଣୀମାନଙ୍କୁ ବସ୍ତ୍ରଦାନ ।

ତଥାଗତ ବୁଦ୍ଧଙ୍କର ଏ ସମ୍ବନ୍ଧରେ ପ୍ରଶ୍ନ କରିବା ଦେଖି ବିଶାଖା ତାଙ୍କୁ ପ୍ରତି ବିଷୟରେ ସବୁ କଥା ବୁଝାଇଥିଲେ । ସେ କହିଥିଲେ, ବର୍ଷା ଦିନେ ଭିକ୍ଷୁମାନେ ଭିକ୍ଷା ମାଗିବାକୁ ଯିବାକଥା ଚିନ୍ତାକଲେ ବି କଷ୍ଟହୁଏ । ନୂଆଭିକ୍ଷୁମାନେ ନଗରକୁ ଆସି ପଥଚିହ୍ନି ନ ପାରି ଭିକ୍ଷା କରିବାକୁ ଅସମର୍ଥ ହୋଇପଡ଼ନ୍ତି । ପୁଣି ବୁଲି ବୁଲି କ୍ଳାନ୍ତ ହୋଇଥିବାରୁ ସେମାନଙ୍କୁ ଭିକ୍ଷା କରିବାକୁ ଏଣେତେଣେ ଯିବା ବଡ଼ କଷ୍ଟପ୍ରଦ ହୁଏ । ଭିକ୍ଷୁମାନେ ନଗରରେ ଅଚିହ୍ନା ପଥରେ ଭିକ୍ଷାମାଗି ଏକାକୀ ବୁଲିବାକୁ ପଡ଼ିବାରୁ

ତାଙ୍କର କର୍ତ୍ତବ୍ୟ କରିହୋଇପାରେ ନାହିଁ । ସେମାନଙ୍କୁ ଭୋଜନ ଦାନ କଲେ ସେମାନେ ତାଙ୍କର କର୍ତ୍ତବ୍ୟ, ପ୍ରଚୁର ଓ ତପସ୍ୟାଦ ଭଲରେ କରିପାରିବେ । ଭିକ୍ଷୁ ରୋଗୀ ହେଲେ ସେ ଭିକ୍ଷା କରିପାରିବ ନାହିଁ କି ତାର ସେବାକାରୀ ମଧ୍ୟ ରୋଗୀକୁ ଛାଡ଼ି କୁଆଡ଼େ ଯାଇପାରିବ ନାହିଁ । ଏହି ଦୁଇ ଶ୍ରେଣୀର ଭିକ୍ଷୁମାନଙ୍କୁ ନିଜ ନିଜ ସ୍ଥାନରେ ଆହାର ଦେବାକୁ ହେବ । ଭିକ୍ଷୁଣୀମାନଙ୍କୁ ଉପଯୁକ୍ତ ପରିମାଣରେ ବସ୍ତ୍ର ନ ଦେଲେ ସେମାନେ ଉପହସିତା ହେବେ ।

ବିଶାଖାଙ୍କ ଅକାଟ୍ୟ ଯୁକ୍ତିପୂର୍ଣ୍ଣ ବ୍ୟାଖ୍ୟା ଶୁଣି ତାଙ୍କର ପ୍ରାର୍ଥନାକୁ ତଥାଗତ ବୁଦ୍ଧ ପୂରଣ କଲେ । ବୌଦ୍ଧ-ବିହାରମାନ ସ୍ଥାପିତ ହେଲା । ବୌଦ୍ଧରାଜାମାନେ ସେଥିପାଇଁ ସମସ୍ତ ବ୍ୟବସ୍ଥା କରିଥିଲେ । ବୁଦ୍ଧଦେବ ନାରୀମାନଙ୍କୁ ସଂଘରେ ରହି ଭିକ୍ଷୁଣୀ ହେବାପାଇଁ ଅନୁମତି ଦେଲେ ମଧ୍ୟ ସଂଘରେ ଭିକ୍ଷୁଣୀମାନଙ୍କଠାରୁ ଭିକ୍ଷୁମାନଙ୍କ ସମ୍ମାନ ଓ ମୂଲ୍ୟ ଅଧିକ ଥିଲା । କୌଣସି ପରିସ୍ଥିତିରେ ମଧ୍ୟ ଭିକ୍ଷୁଙ୍କ ଠାରୁ ଭିକ୍ଷୁଣୀଙ୍କୁ ଉତ୍ତମ ବୋଲି କେହି ମଣୁ ନଥିଲେ । ବୁଦ୍ଧଦେବଙ୍କ ନିର୍ବାଣ ପୂର୍ବରୁ କୌଣସି ଭିକ୍ଷୁଣୀ ତାଙ୍କ ନିକଟରେ ରହିବା ସୌଭାଗ୍ୟ ପାଇ ନଥିଲେ । ତାଙ୍କ ନିର୍ବାଣ ପରେ ବୁଦ୍ଧଙ୍କ ଶବ ଉପରେ ଯେଉଁ ଭିକ୍ଷୁଣୀମାନେ ଅଶ୍ରୁବର୍ଷଣ କରିଥିଲେ, ସେମାନଙ୍କ ସମ୍ବନ୍ଧରେ ସଂଘର ପ୍ରଧାନ ଭିକ୍ଷୁମାନେ ଅଭିଯୋଗ କରିଥିଲେ ।

କିନ୍ତୁ ଭିକ୍ଷୁଣୀ ନାରୀଙ୍କ ବ୍ୟତିରେକେ ବୌଦ୍ଧସଂଘ ଅଚଳ ହୋଇଥିଲା । ଭିକ୍ଷୁସଂଘର ଭିକ୍ଷୁଣୀମାନଙ୍କ ଛଡ଼ା ସହସ୍ର ସହସ୍ର ଗୃହିଣୀନାରୀ ମଧ୍ୟ ସଂଘରେ ରହି ନିର୍ବାଣ ପଥରେ ଉପାସନା କରୁଥିଲେ । ସେମାନେ ଭିକ୍ଷୁମାନଙ୍କୁ ଭିକ୍ଷା କରି ଆଣିଦେବା,

ରନ୍ଧାବଢ଼ା, ପରିବେଷଣ ଓ ଭିକ୍ଷୁମାନଙ୍କ ପରିଚର୍ଯ୍ୟା କରୁଥିଲେ । ଗୃହସ୍ଥଘରେ ନାରୀମାନେ ମଧ୍ୟ ବିରାଟ ଧର୍ମ ଯଜ୍ଞକାମରେ ନିଜନିଜକୁ ଲଗାଇଥିଲେ ଓ ଧର୍ମାଚରଣ କରୁଥିଲେ । ବୁଦ୍ଧଦେବ ତାଙ୍କର ଭିକ୍ଷୁମାନଙ୍କୁ ନାରୀମାନଙ୍କଠାରୁ ଅଲଗା ରହିବାପାଇଁ ବାରବାର ଉପଦେଶ ଦେଉଥିଲେ । ଏ ସମ୍ବନ୍ଧରେ ଏକ ମନୋରଞ୍ଜକ କାହାଣୀ ଅଛି । ଶିଷ୍ୟ ଆନନ୍ଦ ବୁଦ୍ଧଦେବଙ୍କୁ କହିଲେ, "ହେ ପ୍ରଭୁ ! ନାରୀ ସମ୍ମୁଖରେ ପଡ଼ିଗଲେ କଣ କରିବ ?" ତଥାଗତ କହିଲେ, "ଆନନ୍ଦ, ଦୃଷ୍ଟି ଫେରାଇ ନିଅ । ସେମାନଙ୍କୁ ଦେଖିବ ନାହିଁ ।" ଆନନ୍ଦ କହିଲେ, "ତଥାଗତ ! ଯଦି ଦେଖା ହୋଇଯିବ ତ କଣ ହେବ ?" ତଥାଗତ କହିଲେ, "ତାଙ୍କୁ କଥା କହିବ ନାହିଁ ।" ଆନନ୍ଦ କହିଲେ, "ତଥାଗତ, ଯଦି କୁହାହୋଇଯାଏ, ତେବେ କ'ଣ କରାଯିବ ?" ଗୌତମ କହିଲେ, "ତେବେ ସାବଧାନ ହୋଇ ସେହି ବାଟଭଙ୍ଗି ଚାଲିଯିବ ।"

ବୁଦ୍ଧଙ୍କର ନାରୀମାନଙ୍କ ପ୍ରତି ଅନୁରାଗ ନଥିଲା । ତାଙ୍କର ହୃଦୟ ନାରୀମାନଙ୍କ ପାଇଁ ଉଦାର ନଥିଲା । ନାରୀମାନେ ପରମ୍ପରାଗତ ସଦ୍‌ବ୍ୟବହାର, ସଦ୍‌ଭାବନା ଓ ସଦ୍‌ଧର୍ମାଚରଣ କରୁଥିଲେ । ଭିକ୍ଷୁଣୀ ନାରୀମାନେ ନିଜକୁ ରକ୍ଷା କରିବା ପାଇଁ ବାରବାର ଏକତାବଦ୍ଧ ହୋଇ ବିପ୍ଳବ ପଥରେ ଚାଲୁଥିଲେ । ବୌଦ୍ଧଯୁଗର ନାରୀ ବିଘ୍ନ ମାନୁ ନଥିଲେ । ଭାରତରେ ବୌଦ୍ଧଯୁଗର ନାରୀମାନେ ଧର୍ମ ରାଜ୍ୟର, ପରିବାରର ଓ ସମାଜ ସଂସ୍କାର ତୀବ୍ର ବିରୋଧ କରି ସଂଘମାନଙ୍କରେ ରହି ଧର୍ମାଚରଣ କରି ନିଜର ତପସ୍ୟା ସହିତ ଜୀବନନିର୍ବାହ କରୁଥିଲେ । ଧର୍ମ ବିପ୍ଳବ, ସାମାଜିକ ବିପ୍ଳବ, ପାରିବାରିକ ବିପ୍ଳବ କରିବାରେ ସେ ଯୁଗର ଭାରତୀୟ ନାରୀ ଅଗ୍ରଣୀ ଥିଲେ ।

# ଜନାବାଈ

ନାରୀ ଭାବପ୍ରବଣା ଓ ଉଲ୍ଲାସବତୀ । ହୃଦୟବୃତ୍ତି ତାହାର ଜୀବନରେ ପ୍ରଧାନ ସ୍ଥାନ ଅଧିକାର କରିଥାଏ । ସେଥିପାଇଁ ତାର ଚିତ୍ତବୃତ୍ତି ଅତି କୋମଳ । ନାରୀ ଦେଶମାତୃକାର ସ୍ୱାଧୀନତା ପାଇଁ ଯେପରି ଅକାତରେ ପ୍ରାଣଦାନ କରିପାରେ, ଭଗବାନଙ୍କୁ ଲାଭ କରିବା ପାଇଁ ମଧ୍ୟ ସେହିପରି ହୃଦୟବୃତ୍ତିରେ ତାଡ଼ିତ ହୋଇ ସଂସାରର ସମସ୍ତ ଦୁଃଖ କଷ୍ଟ ଓ ଜ୍ୱାଳାରେ ସିଦ୍ଧ ହୋଇ ଧୈର୍ଯ୍ୟ ନିମନ୍ତେ ଅମ୍ଳାନ ବଦନରେ ଦୁଃଖକଷ୍ଟ ସହ୍ୟ କରିପାରେ । ସଂସାର ତାହା ପକ୍ଷରେ ଅତିମାତ୍ରାରେ ସତ୍ୟ ହେଲେ ମଧ୍ୟ ସଂସାର ବାହାରେ ସେ ନିଜର ଆତ୍ମାର ଉନ୍ନତି ସାଧନ କରିବା ପାଇଁ ଯେ ସାଧନା ଓ ତପସ୍ୟା, ତହିଁରୁ ବିଚ୍ୟୁତ ହୋଇପାରେ ନାହିଁ । ଅବଶ୍ୟ ଏହା ସାଧାରଣ ନାରୀଙ୍କ ଜୀବନରେ ସହଜ ସିଦ୍ଧାନ୍ତ ନୁହେଁ । କୋଟିକେ ଗୋଟିଏ ନାରୀ ନିଜର ଆତ୍ମବିକାଶର ଆନନ୍ଦ ପାଇଁ, ଜୀବନ୍ମୁକ୍ତି ପାଇଁ ସଂସାରକୁ ଆସି ବିପ୍ଳବ ପଥରେ ପ୍ରଧାବିତ ହୋଇଥାନ୍ତି । ଈଶ୍ୱରପ୍ରାପ୍ତି ନିମନ୍ତେ, ଧର୍ମରକ୍ଷା ନିମନ୍ତେ ନାରୀର ସାଧନା ଅତି ବିଚିତ୍ର । ସଂସାର ଜୀବନ ସହିତ ତାର ସେହି କାରଣରୁ ସଂଘର୍ଷ ଅନିବାର୍ଯ୍ୟ ହୋଇପଡ଼େ । ମାତ୍ର ସେ ସବୁ କଷ୍ଟ ଅମ୍ଳାନ ବଦନରେ ସହିପାରନ୍ତି । ଏଥିରେ ନାରୀଜାତିର କଥା ଲେଖୁନାହିଁ—ନାରୀର ବ୍ୟକ୍ତିତ୍ୱ କଥା ଲେଖା ହେଉଛି ।

ଚତୁର୍ଦ୍ଦଶ ଶତାବ୍ଦୀରେ ବମ୍ବେ ପ୍ରଦେଶସ୍ଥ ପଣ୍ଡରପୁରରେ ଜନ୍ମ ହୋଇଥିଲେ ଜଣେ ପ୍ରସିଦ୍ଧ ଭକ୍ତ ସାଧକ—ନାମଦେବ ।

ବାଲ୍ୟକାଳରୁ ସେ ବିଠଲ୍ ଠାକୁରଙ୍କ ଭକ୍ତ ଥିଲେ ଓ ସଦାସର୍ବଦା କୃଷ୍ଣକୀର୍ତ୍ତନ କରୁଥିଲେ । ତାଙ୍କଘରେ ବିଠଲ୍ ଠାକୁରଙ୍କ ପୂଜା ହେଉଥିଲା । ଠାକୁରଙ୍କୁ ଭୋଗ ନ ଦେଲେ ପରିବାରରେ କେହି ଖାଉ ନ ଥିଲେ । ନାମଦେବଙ୍କ ସ୍ତ୍ରୀ ମୁଖରା କଟୁସ୍ୱଭାବ-ସମ୍ପନ୍ନା ଥିଲେ ।

ନାମଦେବ ଗୋଟିଏ ପିତୃମାତୃହୀନା ଅନାଥା ବାଳିକାକୁ କନ୍ୟା ଭଳି ସ୍ନେହରେ ପାଳନ କରୁଥିଲେ । ସେହି ଅନାଥା ବାଳିକାର ନାମ ଜନାବାଈ । ଜନାବାଈଙ୍କୁ ନାମଦେବଙ୍କ ସ୍ତ୍ରୀ ଘରେ ରଖୁ ନ ଥିଲେ । ତାଙ୍କୁ ଘର ପାଖରେ ଗୋଟିଏ କୁଡ଼ିଆ ତିଆରି କରି ରଖାଇଥିଲେ । ଜନାବାଈ ନାମଦେବଙ୍କ ସଂସାରର ସବୁ କାମଦାମ କରୁଥିଲେ । ବାସନକୁସନ ମଜା, ଲୁଗାକଚା, ଘରଦ୍ୱାର ସଫାକରିବା, ଗୋରୁ ମୋହିଁବା, ଅଟା ଚୂରିବା, ଧାନ କୁଟିବା ଇତ୍ୟାଦି ସବୁରକମ ଦାସୀ କାମ କରନ୍ତି । ନାମଦେବଙ୍କ ସ୍ତ୍ରୀ ଯେଉଁ ଅଇଁଠା ଭାତ କଂସାରେ ରଖୁଥିଲେ, କାମଦାମ ସାରି ଜନାବାଈ ସେହି ଭାତକଂସାକୁ ନିଜ କୁଡ଼ିଆରେ ନେଇ ଖାଉଥିଲେ । କୁଡ଼ିଆରେ ଜନାବାଈ ଠାକୁରଟିଏ ରଖି ପୂଜା କରନ୍ତି । ସବୁବେଳେ ହରିନାମ ଜପନ୍ତି । ବିଠଲ୍ ଠାକୁରଙ୍କ ନାଁ ପଡ଼ିଲେ ଜନା କାନ୍ଦି ପକାନ୍ତି । ତାଙ୍କର ଧ୍ୟାନ ଜ୍ଞାନ ସବୁ ହେଲେ ଶ୍ରୀକୃଷ୍ଣ—ବିଠଲ୍ ଠାକୁର । ନିତି ଖାଇବାବେଳେ ଓ ରାତିରେ ନାମଦେବଙ୍କ ଘରୁ ସେ ଯେଉଁ ଅଇଁଠା ଭାତ କଂସାରେ ଆଣୁଥିଲେ, ତାକୁହିଁ ଠାକୁରଙ୍କ ନିକଟରେ ଭୋଗ କରନ୍ତି । ସେ କାହା ନିକଟରେ ତାଙ୍କର ଦୁଃଖ କଷ୍ଟ କଥା କେବେ ପ୍ରକାଶ କରୁ ନ ଥିଲେ । କାଠଘସି ଗୋଠାଇବା, ଘସିପାରିବାବେଳେ ବି ସେ ଶ୍ରୀକୃଷ୍ଣଙ୍କ ନାମ

ଳାଗୁଥାନ୍ତି ଓ ସବୁବେଳେ ଆନନ୍ଦରେ ଥାଆନ୍ତି । ତାହାର କଷ୍ଟକଥା ଓ ଅପମାନ ସେ ମନକୁ ନେଉ ନ ଥିଲେ । ଏତେ ମନଭେଳ ସୁଦ୍ଧା ଖାମିତାରୀ ତାଙ୍କୁ ବଡ଼ ରାଗ ହେଉଥିଲେ । ସବୁବେଳେ ତାଙ୍କ ପ୍ରତି ବିରକ୍ତ ହେଉଥିଲେ । ନାମଦେବଙ୍କର ସ୍ନେହ ଟିକିଏ ଥିଲା ଜନାବାଈଙ୍କ ସମ୍ବଳ ।

ନାମଦେବଙ୍କ ସ୍ତ୍ରୀ ବେଶି ବିରକ୍ତ ହେଉଥାନ୍ତି—ଜନାଙ୍କ ହରିଭକ୍ତି ଦେଖି । ଲୁଗାଗୁଡ଼ିକ କଚା ହେଲା ନାହିଁ । ଡେରି ହୋଇ ଯିବାରୁ ନାମଦେବଙ୍କ ସ୍ତ୍ରୀ ଜନାଙ୍କୁ ଗାଳିଦେଲେ । ଜନାବାଈ ବିମର୍ଷ ହୋଇ କହିଲେ, "ମା ! ଆପଣ ଖରାପଗଦାରୁ ମୋତେ ଆଣି ବଞ୍ଚାଇଛନ୍ତି । ଖୁଆଇ ପିଆଇ ରଖିଛନ୍ତି । ମୁଁ ଆପଣଙ୍କ ସେବାରେ ଧନ୍ୟ । ଆପଣଙ୍କ କଥାରେ ଅବାଧ ହେଲେ ମୋତେ ଠାକୁର ଭଲ ପାଇବେ ନାହିଁ ।" ନାମଦେବ ସ୍ତ୍ରୀ କହିଲେ, "ତୁ ମିଛରେ କାମ କରୁ—ମନ ତୋର ସବୁବେଳେ ତୋ ଠାକୁର ପାଖରେ ପଡ଼ିଥାଏ । ମୋ' ଘର କାମ ଭଲ ହେଉ ନାହିଁ । ଘଷିକାଠ ଆଣି ରଖିନୁ, ଲୁଗା ସକାଳୁ ନେଇ ନଈରେ କାଚି ଆଣୁନୁ ।" ନାମ କହିଲେ, "ମା ! ମୋ ମୁହଁରୁ ମୋ' ଅଜାଣତରେ ଠାକୁର ନାଁ ବାହାରେ । ବିଠଲ୍ ତ ବିଠାଳସ୍ବା ଠାକୁର । ସେ ମୋତେ ସବୁବେଳେ ଅପଦସ୍ତ କରୁଛନ୍ତି । ଲୋକହସା କରୁଛନ୍ତି । ମୋର କାମ କେବେ ଠିକ ପଡ଼େ ନାହିଁ । ମୁଁ ତ ଘୁଞ୍ଚି ନେଉଟିଲେ ଗାଧୁଏ, ଖାଏ । ତାପରେ ଘର ଲଗଡ଼େ—କୁଜୁଚ ଦୁଆର ଘଷେ ଓ ଦୁଆର ଧୁଏ । କାମରେ ଯଦି ଡେରି ହେଇଛି ମତେ କ୍ଷମା ଦିଅ ମା ।" ନାମଦେବ ସ୍ତ୍ରୀ କହିଲେ "ତୁ ପୋଡ଼ାମୁହିଁ, ଖାଲି ଖାଉଚୁ ଆଉ ତୋ ମନ ଠାକୁରଠି ରହିଛି । କାମରେ ମନ ନାହିଁ ।" ଜନା କହିଲେ, "ମା ଏକଥା ମତେ କହନା । ମୁଁ କୃଷ୍ଣନାମ

ଘୁଡ଼ିବାକୁ ଲାଜ ଅଛି । ଠାକୁରଙ୍କ କହ ତା ନାଁ ମୋ' ଜିଭକୁ ନ ଆସୁ । ତେବେ ସିନା ମତେ ଦୋଷ ଦବ ?"

ନାମଦେବ ସ୍ତ୍ରୀଙ୍କ ଗାଳି ଶୁଣି ବଡ଼ ବ୍ୟଥିତ ହେଲେ । ସ୍ତ୍ରୀଙ୍କୁ କହିଲେ, "ଗୋଟିଏ ଅନାଥା ପିଲା ପ୍ରତି ରାଗହେବା ନିଷ୍ଠୁରତା । ସେ କିଛିକାମ ନକଲେ ମଧ୍ୟ ଖାଇବ ।" ନାମଦେବ କହିଲେ—ତୁମେ ଦାସୀର ମୁହଁ ବଢ଼ାଉଛ । ସେ ସବୁବେଳେ କୃଷ୍ଣ କୃଷ୍ଣ କହୁଛି । କୃଷ୍ଣ ତାକୁ ସ୍ୱର୍ଗକୁ ନେବ ! ସେ କେବଳ କାମକୁ ଡରି କପଟ କରୁଛି ।" ନାମଦେବ କହିଲେ—"ସେ ମୋ ଝିଅ । ତମର ସବୁକାମ କରି ସେ ଠାକୁର ନାମ କଲେ ଦୋଷ କଣ ? ସେ ଆମଘରେ ନାମକୀର୍ତ୍ତନ କଲେ ତୁମର ଈର୍ଷା ହେଉଛି କାହିଁକି ? ଏହା ବଡ଼ ଲାଜ କଥା । ତମ ଜ୍ୱାଳାରେ ପିଲାଟା ଉଠିପାରୁନାହିଁ । ପୋଖରୀରେ ପଦ୍ମଫୁଟିଲେ ଭଅଁର ତା ବାସ ସୁଙ୍ଘିବାକୁ ଯାଏ—ମହୁ ପିଏ । ଆଉ ପଦ୍ମତଳେ ଗେଣ୍ଡା, ସାମୁକା, ସାପ ରହିଥାନ୍ତି । ସେମାନେ ଫୁଲର ମୂଲ୍ୟ କିପରି ବୁଝିବେ ? ନାମଦେବ ସ୍ତ୍ରୀ ଆହୁରି ରାଗିଲେ । ନାମଦେବ କହିଲେ, ତୁମେ ନରକର କୀଟ । ଜନା ତରସ ବୁଝିବ କାହୁଁ ? ତମର ମୁହଁ ଦେଖିଲେ ପାପ ହେବ ।" ନାମଦେବ ଚାଲିଗଲେ । ଜନାକୁ ପୁଣି ଗାଳି ଦେଇ ଖାମିଦାଣି କହିଲେ, ତୁ ଶୋଇଲାବେଳେ କୃଷ୍ଣ କୃଷ୍ଣ ହେଉଥିଲୁ ବୋଲି ଗୁହାରି କହିଲୁ । ଜନା କହିଲେ, "ମା ! ମୁଁ କିଛି ଜାଣେ ନା । ଠାକୁରେ ମତେ ଲୋକହସା କରୁଛି ।" ଖାମିଦାଣି କହିଲେ, "ତୁ ନାମ ଛାଡ଼ି ଦେ ।" ଜନା କହିଲେ, "ମା ! ମତେ ମାରିପକା—ମୁଁ ନାମ କେଭେଁ ସେ ଛାଡ଼ିବି ନାହିଁ ।"

ନାମଦେବଙ୍କ ଘରେ ସେଦିନ ହରିକୀର୍ତ୍ତନ ହେଉଥିଲା । ଜନା ଲୁଗା କାଚିବା ଭୁଲିଯାଇ ନାମ କରୁ କରୁ ଶୋଇ ପଡ଼ିଛନ୍ତି ।

ତାଙ୍କ ଆଖିରୁ ଲୁହଧାର ଗଡ଼ୁଛି । ଖାମିଦାଣି ଗାଳିଦେବାରୁ ସେ ଲୁଗା ନେଇ ନଈକୁ ଗଲେ । ସେଠାରେ ଗୋଟିଏ ବୁଢ଼ୀ ଧୋବଣୀ ତାଙ୍କଠୁଁ ଲୁଗା ନେଇ କାଚି ଦେଇଗଲା । ସେଇ ବୁଢ଼ୀକୁ ଜନା କୃତଜ୍ଞତା ଜଣାଇବ ବୋଲି ଖୋଜି ପାଇଲେ ନାହିଁ । ବୁଢ଼ୀ ତାଙ୍କୁ କହିଥିଲା, "ମୁଁ ଏପରି କେତେ ଦୁଃଖୀରଙ୍କିଙ୍କ କାମ କରେ । ତୋର କଲେ କଣ ହେଲା ?" ସେଇ ବୁଢ଼ୀ ରୂପଧରି ଠାକୁରେ ଆସି ଜନାର କାମ କରି ତାକୁ ବଞ୍ଚାଇ ଦେଇଗଲେ ।

ଏ କଥା ଜନା କହିବାରୁ ନାମଦେବ ପ୍ରଭୃତି ତାଙ୍କୁ ଧନ୍ୟ ଧନ୍ୟ କହିଲେ । ତାଙ୍କର ନାଁ ଚାରିଆଡ଼େ ରଟିଗଲା ।

ପାଞ୍ଚଶ ମାଇଲ ଦୂରରୁ ତାଙ୍କୁ ଦେଖିବାକୁ ଲୋକ ଆସିଲେ । ଜଣେ ବୈଷ୍ଣବ ତାଙ୍କୁ ଦେଖିବାକୁ ଗଲେ । ସେ ଦେଖିଲେ, ଅଗଣାରେ ଲୁଗାବାନ୍ଧି ଜନା ଓ ଆଉ ଗୋଟିଏ ସ୍ତ୍ରୀ ଖୁବ୍ କଳିକଜିଆ କରୁଛନ୍ତି । ବୈଷ୍ଣବ ଏହା ଦେଖି କାବା ହୋଇ ଭାବିଲେ—ଏଇ ଭକ୍ତିମତୀ ଜନା ? ଏପରି କଳିହୁରି !" ଜନା ତାଙ୍କୁ ଦେଖି, "କହିଲେ ବାବାଜୀ ! ଆପଣ ଏ କଳି ନିଷ୍ପତ୍ତି କରନ୍ତୁ । ମୁଁ ବାହାରକୁ ଫେରି ଆସି ଦେଖେଁ ଏ ସ୍ତ୍ରୀ ମୋ' ଚୋକେଇ ଘଷି ସବୁନେଇ ତା ଚୋକେଇରେ ପୂରାଇ ଦେଇଅଛି । ଏହା ଅତି ଅନ୍ୟାୟ ।" ବାବାଜି କହିଲେ, "ମୁଁ ଜାଣିବି କପରି ?" ଜନା କହିଲେ, "ମୋ' ଘଷିକୁ କାନରେ ଦେଲେ ସେଥିରୁ "କୃଷ୍ଣ" "କୃଷ୍ଣ" ଶୁଭିବ ।" ସତକୁ ସତ ବାବାଜି ଜନା କଥାର ପ୍ରମାଣ ପାଇବାକୁ ଘଷି କାନପାଖରେ ନେଇ ଦେଲେ । ତହିଁରୁ କୃଷ୍ଣ କୃଷ୍ଣ ଶବ୍ଦ ଶୁଭୁଅଛି । ଏହା ଦେଖି ଅନ୍ୟ ସ୍ତ୍ରୀର ମୁହଁ କଳାପଡ଼ିଗଲା । ସେ ଜନା ଗୋଡ଼ଧରି କ୍ଷମା ମାଗିଲା । ଯାହାର ଯେଉଁ ଘଷି ଚୋକେଇ ସେ ତାହା

ନେଇଗଲେ । ସନ୍ନ୍ୟାସୀ ଆଶ୍ଚର୍ଯ୍ୟ ହୋଇ ଜନାଙ୍କୁ ନମସ୍କାର କଲେ । ତାଙ୍କ ଜୀବନରେ ସେ ଏପରି ଅଦ୍ଭୁତ ଭକ୍ତ ଦେଖି ନ ଥିଲେ ।

ଏହାପରେ ନିତାନ୍ତ ଦୁଃଖରେ ଜନାଙ୍କ ଦିନ ଯାଏ । ଜନା ଦିନେ ତାଙ୍କ କୁଡ଼ିଆରେ ଶୋଇ ଠାକୁରଙ୍କ ନାଁ ଗାଉଛନ୍ତି । ଗୁଡ଼ାଏ ଚାଟଶାଳୀ ପିଲା ପାଠ ପଢ଼ିବାକୁ ଯାଉଥିଲେ । ସେମାନଙ୍କୁ ଜନା ଡାକିବାରୁ ସେମାନେ ଆସିଲେ । ଜନା କହିଲେ, ମୁଁ ତ ପାଠପଢ଼ି ନାହିଁ । ମୋ ତୁଣ୍ଡରୁ ନିରନ୍ତର କୃଷ୍ଣନାମ ଗୀତ ସବୁ ବାହାରୁଛି । ଭିତରୁ କୌଣସି ପିଲା ସେଗୁଡ଼ିକ ଲେଖି ମତେ ଶୁଣାଇ ଦେଲେ ମୁଁ ମାସକୁ କିଛି ପଇସା ଦେବି । ପିଲାଙ୍କ ଭିତରୁ ଗୋଟିଏ କଳାରଙ୍ଗ ବାଳକ ଏକଥା ଶୁଣି ନିତି ଆସି ଜନାଙ୍କ ଗାଉଥିବା ଅଭଙ୍ଗଗୀତ ଲେଖି ତାଙ୍କୁ ଶୁଣାଇ ଯାଉଥିଲା । ଏଥିରେ ଜନାଙ୍କର ବଡ଼ ଆନନ୍ଦ ହେଉଥିଲା ।

ଦିନେ ଖରାବେଳେ ଜନା ନିଜ କୁଡ଼ିଆରେ ଶୋଇପଡ଼ିଥିଲେ । ନାମଦେବଙ୍କ ଆଣିଥିବା ଘରୁ ଭାତ କଂସା ଶିକାରେ ଟଙ୍ଗା ହୋଇଅଛି । ତାଙ୍କର ମନେ ନଥିଲା ଯେ ସେ ଉପାସ ଅଛନ୍ତି ହରିନାମ କରୁ କରୁ ସେ ତନ୍ଦ୍ରାରେ ଶୋଇଛନ୍ତି । ଆଖିରୁ ଲୁହ ବହୁଛି । ଏ ସମୟରେ ଦୂରରୁ ଗୋଟିଏ କଳାଯୁବକ ଧଇଁସଇଁ ଆସି କହିଲା, "ମୋତେ ଭୋକ କରୁଛି, ଗଣ୍ଡେ ଭାତ ଦିଅ ।" ଜନା କାନ୍ଦିକରି କହିଲେ, "ଭାଇ ! ମୋ' କପାଳ ମନ୍ଦ । ଦିନେ ଠାକୁରଙ୍କୁ ଭଲ ଜିନିଷ ଦେଇ ପାରିନାହିଁ । ଅଇଁଠା ଭାତ ଭୋଗକରି ଦିଏ । ତୋତେ କେଉଁଠୁ ଦେବି ? ଶିକାରେ ସେଇ ଅଇଁଠା ନିତି ଖାଅ ।" ଏବେ ନାମଦେବଙ୍କ ଘରେ

ଉତ୍ସବ ହେଲା । ମନେ ଖାଉଁନ୍ଦାଣି ଦୁଇ ମହଣ ଅଟା ଚୂରିବାକୁ ଦେଲେ । ମୁଁ ଠାକୁରଙ୍କ ପାଇଁ କାମ କରିବା ଭୁଲିଯାଏ । କଣ କରିବି ଗହମ ଧୋଇ ଶୁଖାଇ ରଖିଲି । କାନ୍ଦି କାନ୍ଦି ଶୋଇ ପଡ଼ିଲି । ସକାଳୁ ଦେଖିଲି ଯେ ମୋର ଗହମ ଦୁଇ ମହଣ କିଏ ପେଷିଦେଇ ଯାଇଛି । ଖାଉଁନ୍ଦାଣିଙ୍କ ଗାଳିମାଡ଼ରୁ ମୁଁ ହାନ୍ତ ପାଇଲି । କିନ୍ତୁ ମୋର ତ କପାଳ ଖରାପ । ମୁଁ ତାଙ୍କୁ ସେବାକରିବି କପରି ?” ଯୁବକ କହିଲା, “ଖରାରେ ମୋ ତଣ୍ଟି ଶୁଖିଛି । ଘୃତ କଂସା ମତେ ଦିଅ । ଅଇଁଠା ମୁଁ ମାନିବି ନାହିଁ ।” ଏହା କହି ଯୁବକଟି ଶିକାରୁ କଂସା ନେଇ ଆସି ଘୃତ ଖାଇଲା ।

ପାଣ୍ଡାରପୁର ବିଠଲ୍ ଦେଉଳରେ ଠାକୁରଙ୍କ ଜରିପାଟ ଝୁଦର କିଏ ଚୋରିକଲା ବୋଲି ହୁରି ପଡ଼ିଲା । ଚରମାନେ ସବୁଆଡ଼େ ଖୋଜିଲେ । ଗୋଟିଏ ଚର ଯାଇ ରାଜାଙ୍କୁ କହିଲା, “ଜନାବାଈ ଅଳ୍ପଗୁଣୀରେ ଜରି ପାଟଝୁଦର ପଡ଼ିଅଛି ।” ଜନାକୁ ରାଜା ଧରିଆଣି ବନ୍ଦୀକରି ରଖିଲେ । ରାଜ୍ୟଯାକ ଜନାକୁ ଭଲ ବୋଲି ଜାଣିଥିଲେ । ବର୍ତ୍ତମାନ ତାଙ୍କୁ ଚୋରଣୀ ବୋଲି କେହି ବିଶ୍ୱାସ ନ କରି ହାୟ ହାୟ କଲେ । ରାଜାଙ୍କ ବିଚାରରେ ଜନାକୁ ଶୂଳି ହୁକୁମ ହେଲା । ଦେଶବାସୀ ଓ ଜନାର ଧର୍ମ ପିତା ନାମଦେବ ବଡ଼ ବ୍ୟସ୍ତହେଲେ । ନାମଦେବ କାନ୍ଦିଲେ ।

ନିର୍ଦ୍ଦିଷ୍ଟ ଦିନରେ ପ୍ରକାଶ୍ୟ ପଡ଼ିଆରେ ଶୂଳି ଖୁଣ୍ଟି ପୋତା ହେଲା । ଲକ୍ଷ ଲକ୍ଷ ଲୋକ ଜନାର ଶୂଳି ଦେଖିବା ପାଇଁ ଦୁଃଖମୟ ହୃଦୟ ନେଇ ରୁଣ୍ଡ ହେଲେ । ଜନାର ଭୟ ନଥିଲା । ତାକୁ ରଜା କହିଲେ—ସତକଥା ମାନିଲେ ଦଣ୍ଡରୁ ମୁକ୍ତ ଦେବେ । ମାତ୍ର ସେ ନୀରବ ରହିଲେ ।

ଶୂଳି ଲୁହାକଣ୍ଟା ଉପରେ ଜନାକୁ ବସାଇ ଦେଲାବେଳେ ସମସ୍ତଙ୍କ ଆଖି ଦୁଃଖରେ ମୁଦି ହୋଇପଡ଼ିଲା । ମାତ୍ର ମୁହୂର୍ତ୍ତକ ପରେ ସମସ୍ତେ ଦେଖିଲେ ଏକ ଅତି ବିଚିତ୍ର ଦୃଶ୍ୟ । ଶୂଳି ସ୍ଥାନରେ ଶୂଳି ନାହିଁ । ଶ୍ରୀକୃଷ୍ଣ ବିଠଲ ଠାକୁରଙ୍କ ମୁଣ୍ଡ ଉପରେ ଜନା ହାତଯୋଡ଼ି ବସିଛି । ଏହା ଦେଖି ରାଜା ଓ ପାତ୍ରମନ୍ତ୍ରୀ ଜନାକୁ କ୍ଷମା ମାଗିଲେ । ବହୁତ ଦାନ ଯୌତୁକ ଦେଇ ସେବାକରିବା ତାଙ୍କ ପାଇଁ ଠାକୁର ମନ୍ଦିର ଭିତରେ ରହିବାକୁ ଓ ନିତି ଠାକୁରଙ୍କ ପାଇଁ ସବୁ ବ୍ୟବସ୍ଥା କରିଦେଲେ । ନାମଦେବ ଏହା ଦେଖି ଏ ସମସ୍ତ ଯେ କୃଷ୍ଣଙ୍କର ଭକ୍ତଙ୍କ ଦୟା, ଏହା କହି ଜନାକୁ ବହୁତ ଆଶୀର୍ବାଦ କଲେ ।

ଜନା ତାଙ୍କର ଜୀବନ ଉନ୍ମେଷ କାଳରୁ ଜୀବନ ଶେଷରେ ବିଦ୍ରୋହ କରି ଯାଇଅଛନ୍ତି । ତାଙ୍କର ବିପ୍ଳବ ଅନ୍ତଃସଲିଳା ଫଲ୍‌ଗୁ ଜଳ ଆତ୍ମନିଳୟରେ ପ୍ରବାହିତ ହେଉଥିଲା । କିନ୍ତୁ ସେ ବିପ୍ଳବ ନିଜର, ଯେଉଁ ଲକ୍ଷ୍ୟ ଓ ଆଦର୍ଶ ନିମିତ୍ତ ସେ କରିଥିଲେ । ଭଗବାନହିଁ ତାଙ୍କ ନିକଟରେ ଶ୍ରେଷ୍ଠ ଲକ୍ଷ୍ୟ ଥିଲା । ସେ ଠାକୁରଙ୍କ ପାଇଁ ସର୍ବସ୍ୱ ତ୍ୟାଗ କରି ଦାସୀ ପରି ଜୀବିକା ଧାରଣ କରୁଥିଲେ । ମାତ୍ର ତାଙ୍କର ସ୍ୱଭାବ କେତେଗୋଟି ବାଣୀଙ୍କର ମଧ୍ୟ ସେ କାଳରେ ଥିବାର ଇତିହାସ ଲେଖୁନାହିଁ ।

---

ଶ୍ରୀ ସତ୍ୟନାରାୟଣ ମିଶ୍ର, ଓଡ଼ିଶା ପବ୍ଲିଶିଂ ପ୍ରେସ୍, କଟକଙ୍କ ଦ୍ୱାରା ମୁଦ୍ରିତ । ୧୯୫୮ ।